# ଶ୍ରୀମନ୍ଦିର : ଶ୍ରୀଜଗନ୍ନାଥ

ସଂକଳକ
ଶ୍ରୀ ମନୋରଂଜନ ସିଂହାରୀ
ସଂପାଦକ, ପୁସ୍ତକାଳକ ଓ ମହାଜନ ନିଯୋଗ
ଓ ସଭ୍ୟ, ଶ୍ରୀ ଜଗନ୍ନାଥ ମନ୍ଦିର ପରିଚାଳନା କମିଟି

## ସଂକଳନ ସମ୍ପର୍କରେ—

କେତେମାସ ତଳେ କେଜାଣି କାହିଁକି ପ୍ରଭୁ ଜଗନ୍ନାଥଙ୍କ ସମ୍ପର୍କରେ ଏପରି ଏକ ପ୍ରବନ୍ଧ ସଂକଳନ ପ୍ରକାଶ କରିବା ପାଇଁ ପ୍ରବଳ ଇଚ୍ଛା ହେଲା । ଭାବିନେଲି - ଇଚ୍ଛାମୟଙ୍କ ଏ ହୁଏତ ଇଚ୍ଛା । ମନକଥା ବ୍ୟକ୍ତ କରିବାମାତ୍ରେ ଶ୍ରୀମନ୍ଦିରର ସହକାରୀ ପ୍ରଶାସକ ଶ୍ରୀ ମହୀମୋହନ ତ୍ରିପାଠୀ ଓ ସେବାୟତ ଭାଇ ଶ୍ରୀ ପୂର୍ଣ୍ଣଚନ୍ଦ୍ର ଖୁଣ୍ଟିଆ ମୋତେ ଆଗ୍ରହରେ ସାହାଯ୍ୟ ଓ ସହଯୋଗ କରିବାକୁ ଆଗେଇ ଆସିଲେ । ସର୍ବାଗ୍ରେ ସେମାନଙ୍କୁ ମୋର କୃତଜ୍ଞତା ଜଣାଉଛି ।

ମୋର ପତ୍ରପାଇ ଓ ଅନୁରୋଧ ରକ୍ଷାକରି ଯେଉଁ ଲେଖକ-ବଂଧୁମାନେ ଏ ସଂକଳନ ପାଇଁ ଲେଖା ଦେଇଛନ୍ତି ସେମାନଙ୍କୁ ମଧ୍ୟ ମୋର କୃତଜ୍ଞତା ଜଣାଉଛି । ଶ୍ରଦ୍ଧେୟ ଶ୍ରୀ ଲକ୍ଷ୍ମୀଧର ପୂଜାପଣ୍ଡା ବହୁ ଶ୍ରମକରି ବହି ଓ ମଲାଟ ଛପାକାର୍ଯ୍ୟ ତଦାରଖ କରିଥିବାରୁ, ଶିଳ୍ପୀ ଶ୍ରୀ ଆଶୁତୋଷ ସିନ୍ହା ପ୍ରଚ୍ଛଦପଟ ଅଙ୍କନ କରିଥିବାରୁ ଓ ପୁରୀର ରମା ପ୍ରେସ୍ ମୁଦ୍ରଣ କାର୍ଯ୍ୟ ଯଥାଶୀଘ୍ର ଶେଷ କରିଥିବାରୁ ସେମାନଙ୍କୁ ମୋର ଅନ୍ତରର ସନ୍ତୋଷ ଓ ଧନ୍ୟବାଦ ଜଣାଉଛି ।

ଜଗନ୍ନାଥ ସମସ୍ତଙ୍କ ମଙ୍ଗଳ କରନ୍ତୁ ।

ମନୋରଂଜନ ସିଂହାରୀ

# — ସୂଚୀ —

- ପ୍ରକାଶକ — ଶ୍ରୀ ମନୋରଂଜନ ସିଂହାରୀ
- ମୁଦ୍ରଣ — ରମା ପ୍ରେସ, ପୁରୀ
- ମଲ୍ଟ ମୁଦ୍ରଣ — ଜଗନ୍ନାଥ ପ୍ରୋସେସ୍, କଟକ
- ପ୍ରଚ୍ଛଦପଟ ଶିଳ୍ପୀ — ଶ୍ରୀ ଆଶୁତୋଷ ସିନ୍ହା, ପୁରୀ
- ପ୍ରଥମ ପ୍ରକାଶ (୧୦୦୦) — କାର୍ତ୍ତିକ ଶୁକ୍ଳ ଏକାଦଶୀ ୧୯୮୯
- ମୂଲ୍ୟ — ଟ ୧୨-୦୦ (ବାରଟଙ୍କା ମାତ୍ର)

# ଶ୍ରୀ ପୁରୁଷୋତ୍ତମ-ଜଗନ୍ନାଥ ମନ୍ଦିରର ନିର୍ମାତା ଓ ନିର୍ମାଣକାଳ

ଡକ୍ଟର କୈଳାସ ଚନ୍ଦ୍ର ଦାଶ

( ୧ )

ପୁରୁଷୋତ୍ତମ-ଜଗନ୍ନାଥ ପୀଠ ଭାରତର ଧର୍ମକ୍ଷେତ୍ର ମାନଙ୍କ ମଧ୍ୟରେ ଅନ୍ୟତମ । ଏହି ପୀଠରେ ପୁରୁଷୋତ୍ତମଙ୍କ ପାଇଁ ନିର୍ମିତ ଉତ୍ତୁଙ୍ଗ ମନ୍ଦିର ପ୍ରାଚୀନ ଓ ମଧ୍ୟଯୁଗୀୟ କଳା ଓ ସ୍ଥାପତ୍ୟର ଉତ୍କୃଷ୍ଟ ନିଦର୍ଶନ । ଜେମ୍ସ୍ ଜନ୍ ପ୍ରେଷ୍ଟନ୍ (James John Preston)ଙ୍କ ରଚିତ "Sacred Centers" ନାମକ ପୁସ୍ତକରେ ଏହି ପୀଠକୁ ଦକ୍ଷିଣ ଏସିଆର ସମଗ୍ର ହିନ୍ଦୁମାନଙ୍କର ଏକ ସ୍ମରଣୀୟ ଧର୍ମକ୍ଷେତ୍ର ରୂପେ ବର୍ଣ୍ଣନା କରାଯାଇଛି[1] । ପୁରୁଷୋତ୍ତମ କ୍ଷେତ୍ରର ଐତିହ୍ୟ ସଂପର୍କରେ ବହୁ ତଥ୍ୟପୂର୍ଣ୍ଣ ଆଲୋଚନା କରାଯାଇଛି ଏବଂ ସେ ସବୁକୁ ଆଲୋଚନାର ପରିସରକୁ ଆଣିଲେ ସ୍ପଷ୍ଟ ସିଦ୍ଧାନ୍ତ ନେବାକୁ ହେବ ଯେ ଏହା ଭାରତବର୍ଷରେ ଏକ ମୁଖ୍ୟ ସାଂସ୍କୃତିକ ପୀଠ ରୂପେ ମଧ୍ୟଯୁଗରୁ ଏ ପର୍ଯ୍ୟନ୍ତ ମୁଣ୍ଡଟେକି ରହିଛି । ଏହି ନିବନ୍ଧରେ ଏହି କ୍ଷେତ୍ରରେ ଥିବା ବୃହତ୍ ଜଗନ୍ନାଥ ମନ୍ଦିରର ନିର୍ମାତା ଓ ନିର୍ମାଣକାଳ ସଂପର୍କରେ ସାହିତ୍ୟିକ ଓ ପ୍ରତ୍ନତାତ୍ତ୍ୱିକ ଉପାଦାନ ସାହାଯ୍ୟରେ ଏକ ବିବରଣୀ ଉପସ୍ଥାପନ କରାଯାଇଛି ।

( ୨ )

ଜଗନ୍ନାଥ ମନ୍ଦିରର ନିର୍ମାଣ ସଂପର୍କରେ ତିନୋଟି ମୌଳିକ ମତ ବିଭିନ୍ନ ପ୍ରାମାଣିକ ଉପାଦାନ ସାହାଯ୍ୟରେ ଉପସ୍ଥାପନ କରାଯାଇଛି ।

କ) ପୁରାଣମାନଙ୍କର ପୁରୁଷୋତ୍ତମ ଖଣ୍ଡ, ସାରଳା ମହାଭାରତର ବନପର୍ବ ଓ ମୂଷଳୀ ପର୍ବକୁ ଆଧାର କରି କୁହାଯାଇଥାଏ ଯେ ଏହି ବୃହତ୍ ମନ୍ଦିରର ନିର୍ମାତା ମାଳବାଧିପତି ସମ୍ରାଟ ଇନ୍ଦ୍ରଦ୍ୟୁମ୍ନ । ମଧ୍ୟଯୁଗର ଶେଷକାଳ ପର୍ଯ୍ୟନ୍ତ ଏହି ଚିନ୍ତାଧାରା ଗଢ଼ିଆସିଥିଲା ଏବଂ ଏ ପର୍ଯ୍ୟନ୍ତ ଏ ପ୍ରସଙ୍ଗଟିକୁ ପାରମ୍ପରିକ ରୀତିରେ ଦର୍ଶକ ଓ ତୀର୍ଥଯାତ୍ରୀମାନେ ଗ୍ରହଣ କରୁଛନ୍ତି ।

---

1- Preston, James, J, Sacred Centers, Development of a Classificatory Scheme, Mayur Publications, Bhubaneswar, P. 17.

ଖ) ମାଦଳା ପାଞ୍ଜିର ରାଜଭୋଗ ଚରିତ, କଟକ ରାଜବଂଶାବଳୀ, ଓଡ୍ରରାଜ ବଂଶାବଳୀ ଓ ଗଙ୍ଗବଂଶାନୁଚରିତ ଚମ୍ପୂ ପ୍ରଭୃତି ଓଡ଼ିଶା ଇତିହାସ ସଂପର୍କିତ ଗ୍ରନ୍ଥମାନଙ୍କରେ ଏହି ମନ୍ଦିର ଚୋଡ଼ଗଙ୍ଗଦେବଙ୍କର ବଂଶଧରମାନେ ବିଶେଷତଃ ଅନଙ୍ଗଭୀମଦେବଙ୍କ ଦ୍ୱାରା ନିର୍ମିତ ହୋଇଥିଲା ବୋଲି ମତ ପ୍ରକାଶ ପାଇଛି । ଉନବିଂଶ ଶତାବ୍ଦୀର ଶେଷ ପର୍ଯ୍ୟନ୍ତ ଏହି ମତକୁ ଦେଶୀୟ ତଥା ବିଦେଶୀ ଗବେଷକମାନେ ଗୁରୁତ୍ୱ ଦେଇଥିଲେ[2] ।

ଗ) ଉନବିଂଶ ଶତାବ୍ଦୀର ଶେଷ ଦଶନ୍ଧିରେ ଗଙ୍ଗବଂଶୀ ସମ୍ରାଟମାନଙ୍କର ତାମ୍ରଲେଖ ଗୁଡ଼ିକର ଆବିଷ୍କାର ଓ ପଠନପରେ ପୂର୍ବୋକ୍ତ ଦୁଇଟି ମତକୁ ପ୍ରାଧାନ୍ୟ ଦିଆଯାଇ ନଥିଲା । ଐତିହାସିକ ମନମୋହନ ଚକ୍ରବର୍ତ୍ତୀ ଏହି ତାମ୍ରଫଳକ ଗୁଡ଼ିକର ବିବରଣୀକୁ ଗ୍ରହଣ କରି ଗଙ୍ଗବଂଶୀ ସମ୍ରାଟ ଚୋଡ଼ଗଙ୍ଗ ଏହି ମନ୍ଦିରର ନିର୍ମାତା ଥିଲେବୋଲି ମତଦେଇଥିଲେ ଏବଂ ପରେ ପରେ ମନମୋହନ ଗାଙ୍ଗୁଲୀ, ରାଖାଲଦାସ ବାନାର୍ଜୀ, ହରେକୃଷ୍ଣ ମହତାବ ପ୍ରଭୃତି ଐତିହାସିକମାନେ ଏହି ମତକୁ ଗ୍ରହଣ କରିନେଲେ[3] ।

ଏହି ତିନୋଟି ମତ ମଧ୍ୟରୁ ପ୍ରଥମ ମତ ସଂପର୍କରେ ବର୍ତ୍ତମାନ ଜ୍ଞାନ-ଦୃଷ୍ଟିରୁ ଏତିକିମାତ୍ର କୁହାଯାଇପାରେ ଯେ ପୁରାଣ ବର୍ଣ୍ଣିତ ଜଗନ୍ନାଥ ମନ୍ଦିର ନିର୍ମାତା ଇନ୍ଦ୍ରଦ୍ୟୁମ୍ନ ପ୍ରାଚୀନ ସମ୍ରାଟ୍ ରୂପେ ପରିଚିତ ଥିଲେ ମଧ୍ୟ ସେ ନିଜେ ଏହି ବୃହତ୍ ମନ୍ଦିର ନିର୍ମାଣ କରିନଥିଲେ । ଅନ୍ୟପକ୍ଷରେ ପୁରୁଷୋତ୍ତମ କ୍ଷେତ୍ରର ଅଗ୍ରଗତି ପାଇଁ ରାଜଶକ୍ତିର ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଅବଦାନକୁ ପ୍ରକାଶ କରିବା ପାଇଁ ଏକ ନିର୍ଭୁଲ ସଂକେତ ରୂପେ ଇନ୍ଦ୍ରଦ୍ୟୁମ୍ନ ନାମର ଅବତାରଣା କରାଯାଇଛି । ଏହି ଦୃଷ୍ଟିରୁ ଇତିହାସରେ ପରିଚିତ ସମ୍ରାଟମାନେ (ଯେଉଁମାନେ ପ୍ରକୃତ ମନ୍ଦିର

---

2- ମାଦଳାପାଞ୍ଜି, ରାଜଭୋଗ ଚରିତ, ୧୯୬୯, ପୃ ୭୪-୭୫; ଓଡ୍ରଦେଶ-ରାଜବଂଶାବଳୀ, Institute of Orissan Culture, Bhubaneswar (ସଂପାଦକ-ଡକ୍ଟର କାହ୍ନୁଚରଣ ମିଶ୍ର), ପୃ ୧୫-୧୬; ଗଙ୍ଗବଂଶାନୁଚରିତ ଚମ୍ପୂ, ବାସୁଦେବ ରଥ ସୋମଯାଜି (ସଂପାଦନା-ପ୍ରମିଳା ମିଶ୍ର), ଭୁବନେଶ୍ୱର, ପୃ ୧୭୪-୭୭; କଟକ ରାଜବଂଶାବଳୀ (ସଂପାଦକ-ଡକ୍ଟର ଗୟାଚରଣ ତ୍ରିପାଠୀ ଓ ହରମାନ୍ କୁଲ୍‌କେ), Vohra Publishers and Distributors, Allahabad, P. 19-20. Stirling, A; An account of Orissa, Asiatic Researches, 15 (1822), pp. 163-338; Hunter, W.W. Orissa, 1872. ପ୍ୟାରୀମୋହନ ଆଚାର୍ଯ୍ୟଙ୍କ ଓଡ଼ିଶା ଇତିହାସ ଓ ରାଜେନ୍ଦ୍ରଲାଲ ମିତ୍ରଙ୍କ "Antiquities of Orissa" ଏହି ତଥ୍ୟକୁ ଗୁରୁତ୍ୱ ଦେଇଛି ।

ନିର୍ମାଣ କାର୍ଯ୍ୟ ସହିତ ଜଡ଼ିତଥିଲେ), ପୁରାଣ ପୃଷ୍ଠାରେ ଇନ୍ଦ୍ରଦ୍ୟୁମ୍ନ ନାମ ମଧ୍ୟରେ ଲୁଚି ରହିଗଲେ । ଆଞ୍ଚଳିକ ସ୍ତରରୁ ପୁରୁଷୋତ୍ତମ କ୍ଷେତ୍ରକୁ ସର୍ବଭାରତୀୟ ସ୍ତର ତଥା ସର୍ବ ଦକ୍ଷିଣ ଏସିଆ ସ୍ତରକୁ ଆଣିବା ପାଇଁ ଏହି ପୌରାଣିକ ସମ୍ରାଟଙ୍କୁ ମନ୍ଦିରର ନିର୍ମାତା ହିସାବରେ ସୃଷ୍ଟି କରାଗଲା ଓ ଜନଶ୍ରୁତିରେ ତାହା ଯୁଗଯୁଗ ପାଇଁ ରହିଗଲା । ଦ୍ୱିତୀୟ ଓ ତୃତୀୟ ମତ ମଧ୍ୟରୁ ଏହି ପ୍ରସଙ୍ଗରେ ପ୍ରଥମେ ତୃତୀୟ ମତର ଆଲୋଚନା କ୍ରମେ ଦ୍ୱିତୀୟ ମତର ଆଲୋଚନା କରଯାଇ ପାରିବ ଓ ତାହାର ଅସାରତା ସ୍ପଷ୍ଟ ଧରାପଡିଯିବ ।

## ( ୩ )

ଗଙ୍ଗବଂଶୀ ସମ୍ରାଟ ଚୋଡ଼ଗଙ୍ଗଦେବ (ଖ୍ରୀ. ୧୦୭୮-୧୧୪୭) ଏହି ବୃହତ୍ ମନ୍ଦିର ନିର୍ମାଣ କରିଥିବା କଥା ତାଙ୍କ ସମୟର ଶତାଧିକ ଶିଳାଲିପି ଏବଂ ଅନେକ ତାମ୍ରଲେଖରେ ପ୍ରକାଶ ପାଇ ନାହିଁ । ତାଙ୍କ ବଂଶୀୟ ସମ୍ରାଟ ତୃତୀୟ ରାଜରାଜ ଦେବ (ଖ୍ରୀ.୧୧୯୭-୧୨୦୭)ଙ୍କର ଏକ ତାମ୍ର ଫଳକରେ ଏହି ପ୍ରସଙ୍ଗଟିର ବିସ୍ତାରିତ ଆଲୋଚନା ହୋଇଛି[4] । ଗଙ୍ଗେଶ୍ୱର-ଚୋଡ଼ଗଙ୍ଗଦେବଙ୍କର ଏହି ମହନୀୟ କୀର୍ତ୍ତି ବର୍ଣ୍ଣନାରେ ମୁଖରିତ ହୋଇଥିବା ତାମ୍ରଲେଖମାନଙ୍କ ମଧ୍ୟରେ ସର୍ବ ପ୍ରଥମ ତାମ୍ରଫଳକ ଦାସଗୋବା ଗ୍ରାମରୁ ଆବିଷ୍କୃତ ହୋଇଥିଲା ।

---

3- Chakravartti, M. M., JASB, Vol. LXVII, part I (1898), p. 328-31.
Ganguli, M. M., Orissa and Her Remains, p. 401-402.
Ray, H. C., Dynastic History of Northern India (Early Mediaeval Period), vol.1, Calcutta University, 1931, p. 471.
Banerji, R. D; History of Orissa, vol-I, 1930, p. 251.
History of Indian and Eastern Architecture, Fergusson, 1910, vol-II, pp. 108-9.
Mahatab, H. K., History of Orissa, vol-1, p. 204-205.
Mahapatra, K. N., OHRJ, vol-III, No. I, p. 13.
Sircar, D. C., Studies in the Religious life of Ancient and Mediaeval India, 1971, p. 75-78.

ଏହି ତାମ୍ରଫଳକରେ ବର୍ଣ୍ଣନା କରଯାଇଛି,

"ପ୍ରାଦୌ ଯସ୍ୟ ଧରନ୍ତରୀକ୍ଷମଖିଳଂ ନାଭିଷ୍ଟ ସର୍ବାଦିଶଃ
ଶ୍ରୋତ୍ରେ ନେତ୍ରଯୁଗଂ ରବୀନ୍ଦୁଯୁଗଳମୂର୍ଦ୍ଧାପିଚ ଦ୍ୟୌରସୌ ।
ପ୍ରସାଦଂ ପୁରୁଷୋତ୍ତମସ୍ୟ ନୃପତିଃ କୋନାମ କର୍ତ୍ତୁଂ କ୍ଷମଃ
ତସ୍ୟେତ୍ୟାଦ୍ୟ ନୃପୈରୁପେକ୍ଷିତଂ ଇମଂ ଚକ୍ରେଥ ଗଙ୍ଗେଶ୍ୱରଃ ॥
ଲକ୍ଷ୍ମୀ ଜନ୍ମଗୃହଂ ପୟୋନିଧିରସୌ ସମ୍ଭାବିତସ୍ୟ ସ୍ଥିତିନ୍ନୋ—
—ଧାମ୍ନି ଶ୍ୱଶୁରସ୍ୟ ପୂଜ୍ୟତ ଇତି କ୍ଷୀରବ୍ଧିବାସୋ ଧ୍ରୁବଂ ।
ନିର୍ବିଘ୍ନଃ ପୁରୁଷୋତ୍ତମଃ ପ୍ରମୁଦିତସ୍ତତଧାମ ଲଭତ୍
ରମାପ୍ୟେତଦଭର୍ତ୍ତୁ ଗୃହଂ ବରଂ ପିତୃଗୃହାତ୍ ପ୍ରାପ୍ୟ ପ୍ରମୋଦାନ୍ୱିତା" ॥[4]

ତାମ୍ରଫଳକର ଶ୍ଳୋକାବଳୀରେ ଏକ ଗୁରୁତ୍ୱପୂର୍ଣ୍ଣ ବକ୍ତବ୍ୟ ରହିଛି । ଚୋଡଗଙ୍ଗଦେବ ପୁରୁଷୋତ୍ତମଙ୍କ ପାଇଁ କେବଳ ପ୍ରାସାଦ ନିର୍ମାଣ କରିବାକୁ ସକ୍ଷମ ହେଲେ ଏବଂ ତାଙ୍କ ପୂର୍ବର ରାଜାମାନେ ଏହିପରି ଏକ ମନ୍ଦିର ନିର୍ମାଣ କାର୍ଯ୍ୟକୁ ଉପେକ୍ଷା କରିଥିଲେ । ପୁରୁଷୋତ୍ତମଙ୍କ ପାଇଁ ଚୋଡଗଙ୍ଗ ବିଶାଳ ପ୍ରସାଦ ନିର୍ମାଣ କରିବା ପୂର୍ବରୁ ପୁରୁଷୋତ୍ତମ ନିଜ ଶ୍ୱଶୁରାଳୟରେ ଲକ୍ଷ୍ମୀଙ୍କ ସହିତ ବାସ କରୁଥିଲେ । ତାମ୍ରଫଳକରେ ସ୍ଥାନପାଇଥିବା ଏହିପରି ଏକ ବିବରଣୀକୁ ଲକ୍ଷ୍ୟକରି ଐତିହାସିକ ଷ୍ଟିଟେନ୍‌କ୍ରୋନ୍ ମତଦେଇଥିଲେ ଯେ ଚୋଡଗଙ୍ଗଙ୍କ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମଙ୍କ ମନ୍ଦିର ନଥିଲା[5] । କିନ୍ତୁ ପରେ ଏହି ମତକୁ ପରିବର୍ତ୍ତନ କରି ଅନ୍ୟ ଏକ ଗବେଷଣାତ୍ମକ ଆଲୋଚନାରେ ସେ ପ୍ରକାଶ କଲେ—

---

4- ଦାସଗୋବା ତାମ୍ରଫଳକ, Epigraphia Indica, vol. XXXI, p 255. Vers-29.

5- Stietencron. H.v., "The date of the Jagannatha Temple : Literary sources reconsidered," in "Sidelights on History and Culture of Orissa," edited by M.N.Das, Vidyapuri, Cuttack, p. 518-19.

6- The Cult of Jagannatha and the Regional Tradition of Orissa (CJRTO), edited by Eschmann, A, Kulke, H and Tripathy, G. C., 1978, p. 17-18.

"The Later Ganga inscriptions from the Dasgoba Copper plate grant of Rajaraja III onwards are wrong when they claim all the merit for Anantavarman chodaganga by stating that only Gangeswara built the temple of purusottama while other kings neglected this task[6]."
ଏହି ବୃହତ୍ ମନ୍ଦିର ଗଙ୍ଗେଶ୍ୱର ନିର୍ମାଣ କରିବାର ଶତାଧିକ ବର୍ଷ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ଅନ୍ୟ ଏକ ମନ୍ଦିରରେ ପୁରୁଷୋତ୍ତମ ପୂଜିତ ହେଉଥିବାର ବିଷୟ ସାହିତ୍ୟିକ ତଥା ଅଭିଲେଖୀୟ ଉପାଦାନରୁ ଆଲୋଚକମାନେ ଗ୍ରହଣ କରିଛନ୍ତି[7] ।

୧୧୯୮ ଖ୍ରୀଷ୍ଟାବ୍ଦରେ ଦାସଗୋବା ତାମ୍ରଫଳକର ପ୍ରଶସ୍ତିକାର ମଧ୍ୟ ପ୍ରାକ୍-ଗଙ୍ଗକାଳୀନ ପୁରୁଷୋତ୍ତମ ମନ୍ଦିରର ସ୍ଥିତି ସଂପର୍କରେ ସଚେତନ ଥିଲେ । କାରଣ ଶ୍ଳୋକରେ ସେ ପ୍ରକାଶ କରିଥିଲେ ଯେ ପୁରୁଷୋତ୍ତମ ନୂତନ ମନ୍ଦିର ଚୋଡଗଙ୍ଗ ନିର୍ମାଣ କରିବା ପୂର୍ବରୁ ତାଙ୍କ ଶ୍ୱଶୁରାଳୟ କ୍ଷୀର ସମୁଦ୍ରରେ ଲକ୍ଷ୍ମୀଙ୍କ ସହିତ ବାସକରୁଥିଲେ । ଏଥିରୁ ସ୍ପଷ୍ଟ ଜଣାଯାଏ ଯେ ପ୍ରାକ୍ - ଗଙ୍ଗକାଳୀନ ପୁରୁଷୋତ୍ତମ ମନ୍ଦିର ଚୋଡଗଙ୍ଗଙ୍କ ମନ୍ଦିର ଥିବା ସ୍ଥାନ ମଧ୍ୟରେ ଯଥେଷ୍ଟ ବ୍ୟବଧାନ ଥିଲା । ଏହି ବ୍ୟବଧାନର ଅନ୍ୟ ଏକ ସୂଚନା ଗଙ୍ଗତାମ୍ରଲେଖମାନଙ୍କରେ ରହିଛି । କେତେକ ତାମ୍ରଲେଖରେ ପୁରୁଷୋତ୍ତମଙ୍କ 'ବାସ' ଓ ଅନ୍ୟ କେତେକ ତାମ୍ରଫଳକରେ ପୁରୁଷୋତ୍ତମଙ୍କର ଧାମର ଉଲ୍ଲେଖ ଥିବାରୁ ମନେହୁଏ ଯେ ପୁରୁଷୋତ୍ତମ ମନ୍ଦିର ପାଇଁ ଉଦ୍ଦିଷ୍ଟ ଚୋଡଗଙ୍ଗଙ୍କ ଦ୍ୱାରା ନିର୍ବାଚିତ ସ୍ଥାନଟିରେ

---

7- Ganguli, M. M., Op. cit, 1912, p. 402.
Mitra, Rajendralal, Antiquities of Orissa, Vol. II, 1880/1963, p. 183.
Mahatab, H. K, op. cit., 1959, p. 205-8; Mahapatra, K. N., "Antiquity of Jagannatha-Puri as a place of Pilgrimage," OHRJ, Vol. III, No. 1, p. 6-21, Sircar, D. C., op cit, 1971, p. 78; Mishra, K. C., The Cult of Jagannatha, 1971, p. 34. Tripathy, G. C., 'On the Concept of Purusottama in the Agamas', CJRTO, Chapter II, p. 36-40.

ତାଙ୍କ ପୂର୍ବରୁ ପୁରୁଷୋତ୍ତମ ଉପାସନା ହେଉଥିବା ମନ୍ଦିରଟି ନଥିଲା । ଏଣୁ ଏକ ଦୃଷ୍ଟିରୁ ଚୋଡ଼ଗଙ୍ଗ ଧାମଟି ଲାଭକଲେ । ଧାମ ବ୍ୟାପକ ଅର୍ଥରେ ଗୃହୀତ ହୋଇଥାଏ । ମାତ୍ର 'ବାସ' ସଂକୀର୍ଣ୍ଣ ଅର୍ଥରେ ଗ୍ରହଣ କରାଯାଇପାରେ ।

ତାମ୍ରଫଳକର ପ୍ରଶସ୍ତିକାର ଦୁଇଟି କାରଣରୁ ପୁରୁଷୋତ୍ତମଙ୍କର ବୃହତ୍ ମନ୍ଦିର ନିର୍ମାଣ ହେବା ପୂର୍ବରୁ ସେ ସମୁଦ୍ରରେ ବାସ କରୁଥିଲେବୋଲି ମତନ କରିଥିବା କଥା ଗ୍ରହଣ କରାଯାଇ ପାରେ ।

(୧) ପୁରୁଷୋତ୍ତମଙ୍କର ସର୍ବପ୍ରଥମ ମନ୍ଦିର ସମୁଦ୍ର ନିକଟରେ ଅଥଚ ଏହି ସ୍ଥାନରେ ନଥିଲା ।

(୨) ସେହି ମନ୍ଦିରଟି ଗଙ୍ଗେଶ୍ୱରଙ୍କର ବୃହତ୍ ମନ୍ଦିର ନିର୍ମାଣ କାଳରେ ବା ତାହାପରେ ଭଙ୍ଗି ଦିଆଯାଇଥିଲା ।

ଏହା ଫଳରେ ପରବର୍ତ୍ତୀ କାଳରେ କେବଳ ଗଙ୍ଗେଶ୍ୱର-ଚୋଡଗଙ୍ଗ ପୁରୁଷୋତ୍ତମଙ୍କ ପାଇଁ ମନ୍ଦିର ନିର୍ମାଣ କରିବାକୁ ସକ୍ଷମ ହୋଇଥିଲେ ବୋଲି ତାଙ୍କ ବଂଶଧରମାନେ ଦାବୀ କରିବାର ସୁଯୋଗ ପାଇ ପାରିଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ଏହି ବୃହତ୍ ମନ୍ଦିର ଠାରୁ ଯଥେଷ୍ଟ ପ୍ରାଚୀନ ଶୈବ ମନ୍ଦିର ଗୁଡିକ ଏ ଯାବତ୍ ରହିଥିବାରୁ ଦୃଢ଼ ଧାରଣା ହୁଏ ଯେ ପୁରାତନ ପୁରୁଷୋତ୍ତମ ମନ୍ଦିରଟିକୁ ଉଦ୍ଦେଶ୍ୟରଖି ଭଙ୍ଗି ଦିଆଯାଇଥିଲା ।

ଚୋଡଗଙ୍ଗଙ୍କ ପୂର୍ବରୁ ପୁରୁଷୋତ୍ତମ କ୍ଷେତ୍ରରେ ଥିବା ପୁରୁଷୋତ୍ତମ ମନ୍ଦିରର ପ୍ରକୃତ ଅବସ୍ଥିତି ସଂପର୍କରେ ନିର୍ଦ୍ଦିଷ୍ଟ ନିର୍ଭରଯୋଗ୍ୟ ପ୍ରାମାଣିକ ଉପାଦାନ ମିଳିନାହିଁ । କିନ୍ତୁ ସାହିତ୍ୟିକ ଉପାଦାନରୁ କିଛି ତଥ୍ୟ ସଂଗ୍ରହ କରାଯାଇପାରେ । ସ୍କନ୍ଦ ପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡରେ ପୁରୁଷୋତ୍ତମ କ୍ଷେତ୍ର ଇତିହାସର ଏକ ଚମତ୍କାର ବିବରଣୀ ରହିଛି । ସମଗ୍ର କ୍ଷେତ୍ରକୁ ନୀଳଗିରି ରୂପରେ ଗ୍ରହଣକରି ଏହି ପୁରାଣ ଖଣ୍ଡ ଇଂଦ୍ରଦ୍ୟୁମ୍ନ ମହାରାଜାଙ୍କୁ ପୁରୁଷୋତ୍ତମ-ଜଗନ୍ନାଥ ମଂଦିରର ନିର୍ମାତା

---

୪- ରାଜଗୁରୁ ସତ୍ୟନାରାୟଣ, Inscriptions of Orissa, vol V, part-II, p. 503.

Mukunda Row, N , Three Grants from Ragolu, Hyderabad, 1983, p. 23.

ବୋଲି ପ୍ରକାଶ କରିଛି । ଇଂଦ୍ରଦ୍ୟୁମ୍ନ ଆଖ୍ୟାନର ଏକ ବାଖ୍ୟା ଦ୍ୱାରା ସ୍ପଷ୍ଟ ଜଣାଯାଏ ଯେ ଏହି ପୁରାଣ ଖଣ୍ଡ ରଚନା ବେଳକୁ ସମୁଦ୍ରକୂଳ ନିକଟରେ ଥିବା ପୁରୁଷୋତ୍ତମଙ୍କର ପୁରାତନ ମଂଦିର ସଂପର୍କରେ ନିର୍ଦ୍ଦିଷ୍ଟ ତଥ୍ୟ ଜନଶ୍ରୁତିରେ ରହିପାଇଥିଲା । ତେବେ ପୁରୁଷୋତ୍ତମ ଖଣ୍ଡରେ କୁହାଯାଇଛି ; ଇଂଦ୍ରଦ୍ୟୁମ୍ନଙ୍କର ଅନୁଚରମାନେ ଜଗନ୍ନାଥଙ୍କର ଦାରୁରୂପ ବିଲ୍ୱେଶ୍ୱର ନିକଟସ୍ଥ ସମୁଦ୍ର କୂଳରେ ଦେଖିପାରିଥିଲେ ।

"ଦକ୍ଷିଣେ ତଟଭୂଦେଶେ ବିଲ୍ୱେଶ୍ୱର ସମୀପତଃ
ନିଯୁକ୍ତାଃ ସେବକା ରାଜ୍ଞା ଦସଂଭ୍ରମ ମୁପସ୍ଥିତାଃ
ନ୍ୟବେଦୟନ୍ତ ନୃପତିଂ କୃତାଞ୍ଜଳି ପୁଟା ଦ୍ୱିଜାଃ
ଦେବଦୃଷ୍ଟେ ମହାନ୍ ବୃକ୍ଷସ୍ତଟ ଭୂମୌ ମହୋଦଧେଃ
ପ୍ରବିଷ୍ଟାଗ୍ରଃ ସମୁଦ୍ରାନ୍ତଃ କଲ୍ଲୋଳ ପ୍ଳବମୂଳକଃ
(ସ୍କନ୍ଧ ପୁରାଣ, ପୁରୁଷୋତ୍ତମଖଣ୍ଡ, ଅଷ୍ଟାଦଶ ଅଧ୍ୟାୟ, ଶ୍ଳୋକ ୪ ୭)

ଏଥିରୁ ଏତିକି ମାତ୍ର ଅନୁମାନ କରାଯାଇପାରେ ଯେ ଗୁଣ୍ଡିଚା କ୍ଷେତ୍ର ଏବଂ ବିଲ୍ୱେଶ୍ୱର ନିକଟସ୍ଥ ଅଞ୍ଚଳର ଜଗନ୍ନାଥ ତତ୍ତ୍ୱର ପ୍ରାରମ୍ଭିକ ପର୍ଯ୍ୟାୟ ସହିତ କିଛି ସଂପର୍କ ରହିଛି । ଏହି ସିଦ୍ଧାନ୍ତକୁ ଆହୁରି ଦୃଢ଼ କରେ ଗୁଣ୍ଡିଚା କ୍ଷେତ୍ରରେ ଥିବା ନରସିଂହ ପୀଠ ଏବଂ ଇଂଦ୍ରଦ୍ୟୁମ୍ନ ସର-ଉଭୟ ଜଗନ୍ନାଥ ତତ୍ତ୍ୱର ଆଦି ପର୍ଯ୍ୟାୟ ସହିତ ସଂଶ୍ଳିଷ୍ଟ । ଐତିହାସିକ ଷ୍ଟିଟେନ୍‌କ୍ରୋନ୍ ମଧ୍ୟ ଏହି ମତଉପରେ ଗୁରୁତ୍ୱ ଦେଇ ଥିବାର ଜଣାଯାଏ—"In its vicinity (Nilakantha Temple) is a mound which probably covers the ruins of an establishment of the Natha Sampradaya and of an ancient temple. It invites excavation which in view of its proximity to both the Indradyumna tank and the Gundicha Temple might yield further evidence on the early phase of Jagannatha Cult." [୨] ତଥାପି ପୁରୁଷୋତ୍ତମଙ୍କର ପ୍ରଥମ ମନ୍ଦିର ସଂପର୍କରେ ଐତିହାସିକ ଉପାଦାନ ଅଭାବରୁ ନିର୍ଦ୍ଦିଷ୍ଟ ସିଦ୍ଧାନ୍ତ ଗ୍ରହଣ କରାଯାଇପାରିବ ନାହିଁ ।

---

9. Stietencron, H. v., CJRTO, p. 29.

ସ୍କନ୍ଦପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ମାହାତ୍ମ୍ୟରେ ବର୍ଣ୍ଣିତ ମନ୍ଦିର ନିର୍ମାଣ କାର୍ଯ୍ୟାବଳୀ ଏକାଦଶ ଶତାବ୍ଦୀ ଠାରୁ ଗ୍ରହଣ କରଯାଇଛି ବୋଲି ଏ ଲେଖକ ଅନୁମାନ କରେ । ସ୍କନ୍ଦପୁରାଣ ଅନ୍ତର୍ଗତ ପୁରୁଷୋତ୍ତମ ଖଣ୍ଡ ବର୍ଣ୍ଣିତ ପୁରୁଷୋତ୍ତମ ମନ୍ଦିର ସମ୍ପର୍କିତ ବିବରଣୀକୁ ଗ୍ରହଣ କରି ଷ୍ଟିଟେନ୍‌କ୍ରୋନ୍ ମତ-ଦେଇଥିଲେ ଯେ ଗଙ୍ଗେଶ୍ୱର-ଚୋଡ଼ଗଙ୍ଗ ନିଶ୍ଚିତ ଭାବରେ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ, କିନ୍ତୁ ଏହାର ଚୂଡ଼ାନ୍ତ ରୂପ ଦେଖିବାକୁ ସେ ବଞ୍ଚିରହିନଥିଲେ । ତାଙ୍କ ମତକୁ ନିମ୍ନରେ ଉଦ୍ଧାର କରାଗଲା ।

"The Utkala khanda of the Skanda Purana mentions the garbha-pratistha of the temple. This term has been wrongly taken to denote the consecration of the temple. But this is not so. It refers to a stage in the building of the main temple tower when the foundations have been built and the level of the Garbha-gruha is reached. Now the interior space of the garbha-gruha which also determines the width of the upper most portions of the temple tower is precisely measured. The first layer of stones for its walls are joined with utmost care. And the rite of garbha-pratistha is performed. It is only after the completion of this rite that work starts on the raising of the temple walls. The Utkala khanda tells us that this work was not yet completed when the king ascended to heaven, i.e., died. It describes how the king while in heaven is worried about the proper continuation of the building activities.[10]"

ଏହି ବିଜ୍ଞ ଗବେଷକ ଉତ୍କଳ ଖଣ୍ଡ ଆଧାରିତ ପୁରୁଷୋତ୍ତମ କ୍ଷେତ୍ରର ବିବରଣୀକୁ ଉପଯୁକ୍ତ ଦୃଷ୍ଟିଭଙ୍ଗୀରୁ ବାଖ୍ୟା କରିଥିଲେ ମଧ୍ୟ ତାଙ୍କର ସିଦ୍ଧାନ୍ତ ଠିକ୍ ନୁହେଁ । ଉତ୍କଳଖଣ୍ଡର ରଚୟିତା ପ୍ରାକ୍-ଗଙ୍ଗକାଳରେ ପୁରୁଷୋତ୍ତମ କ୍ଷେତ୍ରରେ ମନ୍ଦିର ନିର୍ମାଣ କାର୍ଯ୍ୟାବଳୀକୁ ଚୋଡ଼ଗଙ୍ଗ କାଳର ମନ୍ଦିର ନିର୍ମାଣ

---

10- Stietencron, H. v., CJRTO, p. 76.

11- ଦାଶ କୈଳାସ ଚନ୍ଦ୍ର, "ଓଡ଼ିଶାରେ ନୃସିଂହ ଉପାସନା", ଝଙ୍କାର, ଏପ୍ରିଲ, ୧୯୮୮, ପୃ. ୪୩-୪୭ ।

କାର୍ଯ୍ୟାବଳୀ ସହିତ ସଂଯୋଜିତ କରି ବର୍ଣ୍ଣନା କରିଛନ୍ତି । କିନ୍ତୁ ଏହି ଗ୍ରନ୍ଥରଚନା କାଳରେ ଜଗନ୍ନାଥ ତତ୍ତ୍ୱର ପ୍ରାରମ୍ଭିକ ପର୍ଯ୍ୟାୟର ଘଟଣାବଳୀ ଲୋକମାନଙ୍କର ସ୍ମୃତିରେ ନଥିଲା । ତେଣୁ ସୋମବଂଶୀ ରାଜତ୍ୱର ଶେଷ ପର୍ଯ୍ୟାୟରୁ (ଅର୍ଥାତ୍ ଦ୍ୱିତୀୟ ଯଯାତିଙ୍କର ରାଜତ୍ୱକାଳ ଠାରୁ) ଏହି କ୍ଷେତ୍ରରେ ପୁରୁଷୋତ୍ତମ ମଂଦିର ନିର୍ମାଣ କାର୍ଯ୍ୟ ଯୋଜନାକୁ ଏଥିରେ ଗ୍ରହଣ କରାଯାଇଛି । ଏହି ତଥ୍ୟ ଉତ୍କଳଖଣ୍ଡରେ ବର୍ଣ୍ଣିତ ଏକ ପ୍ରସଙ୍ଗରୁ ଜଣାଯାଏ । ଉତ୍କଳଖଣ୍ଡରେ ବର୍ଣ୍ଣିତ ଅଛି ଯେ ଇଂଦ୍ରଦ୍ୟୁମ୍ନ ବୃହତ୍ ଜଗନ୍ନାଥ ମଂଦିର ନିର୍ମାଣ କରିବା ପୂର୍ବରୁ ନରସିଂହଙ୍କ ପାଇଁ ଏକ ମଂଦିର ନିର୍ମାଣ କରିଥିଲେ । ମନେହୁଏ ଏହି ନରସିଂହ ମଂଦିର ନିର୍ମାଣର ଉଦ୍ଦେଶ୍ୟଥିଲା ପୁରୁଷୋତ୍ତମ କ୍ଷେତ୍ରକୁ ସଂପୂର୍ଣ୍ଣ ବୈଷ୍ଣବପୀଠ ରୂପେ ଦାବୀ କରିବା । ପରବର୍ତ୍ତୀ ପର୍ଯ୍ୟାୟରେ ପୁରୁଷୋତ୍ତମ ବିଗ୍ରହରେ ନରସିଂହ ଉପାଦାନ ଗର୍ଭିତ କରାଯାଇ ଏହାଙ୍କୁ ଜଗନ୍ନାଥ-ବିଷ୍ଣୁ ବୋଲି ପ୍ରକାଶ କରାଯାଇଥିଲା[11] । ଏହି ନରସିଂହ ମଂଦିର ବର୍ତ୍ତମାନ ଜଗନ୍ନାଥ ମଂଦିର ବେଢାରେ ଅବସ୍ଥିତ । ୧୯୮୪-୮୫ ମସିହା ପର୍ଯ୍ୟନ୍ତ ଏହା ଚୂନ ଦ୍ୱାରା ଆବୃତ ଥିଲା । କିନ୍ତୁ ପ୍ରତ୍ନତତ୍ତ୍ୱ ବିଭାଗର ଉଦ୍ୟମରେ ଏହି ମଂଦିରରୁ ଚୂନ ଛଡ଼ାଯିବା ଫଳରେ ଏକ ପଞ୍ଚରଥି ମଂଦିର ସ୍ପଷ୍ଟ ଦୃଷ୍ଟିଗୋଚର ହୋଇପାରିଛି । ଏ ମଂଦିରର ନିର୍ମାଣ କାଳ ଏକାଦଶ ଶତାବ୍ଦୀର ପ୍ରଥମ ପର୍ଯ୍ୟାୟବୋଲି ବର୍ତ୍ତମାନ ସ୍ଥିର କରାଯାଇପାରେ । ଚୋଡଗଙ୍ଗଙ୍କର ଉତ୍କଳ ଅଭିଯାନ କାଳରେ ପୁରୁଷୋତ୍ତମ-ବିଷ୍ଣୁଙ୍କ ପାଇଁ ଯେଉଁ ଦାନବ୍ୟବସ୍ଥା କରିଥିଲେ, ସେ ସବୁ ଏହି ମଂଦିରର ସମ୍ମୁଖ ଭାଗରେ ଏବଂ ବାଡରେ ଉଲ୍ଲେଖ ହୋଇଥିଲା ଏବଂ ସେଥିରୁ ଅନୁମାନ ହୁଏ ଯେ ଚୋଡ଼ଗଙ୍ଗ ଉତ୍କଳରେ କ୍ଷମତା ବିସ୍ତାର କରିବା ପୂର୍ବରୁ ଏହି ମଂଦିର ଥିଲା । ନରସିଂହଙ୍କର ଏହି ମଂଦିରଟି ସୋମବଂଶୀ ସମ୍ରାଟ ଦ୍ୱିତୀୟ ଯଯାତିଙ୍କ ରାଜତ୍ୱ କାଳରେ ନିର୍ମିତ ହୋଇଥିଲା ବୋଲି ମତ ଦିଆଯାଇ ପାରେ । ଏହି ଦ୍ୱିତୀୟ ଯଯାତି ମଧୁସୂଦନ-ବିଷ୍ଣୁଙ୍କର ପ୍ରତିନିଧି ଥିଲେ ବୋଲି-ତାଙ୍କ ପୁତ୍ର ଉଦ୍ୟୋତକେଶରୀଙ୍କର ଏକ ତାମ୍ରଫଳକରେ ବର୍ଣ୍ଣିତ ହୋଇଛି[12] ।

ଏହି ସୂଚନାଟି ଏହି ପ୍ରସଙ୍ଗ ପାଇଁ ଯଥେଷ୍ଟ ନଥିଲେ ମଧ୍ୟ ଯଯାତି (ଦ୍ୱିତୀୟ) ବୈଷ୍ଣବ ଧର୍ମର ପୃଷ୍ଠପୋଷକ ଥିବାର ତଥ୍ୟ ଏଥିରୁ ସଂଗ୍ରହ କରାଯାଇ ପାରେ । ସମ୍ଭବତଃ ଏହି ଯଯାତି ନରସିଂହ ମନ୍ଦିର ନିର୍ମାଣ ପରେ ପୁରୁଷୋତ୍ତମ କ୍ଷେତ୍ରରେ ଏକ ମଂଦିର ନିର୍ମାଣ କରିବାକୁ ଉଦ୍ୟମ କରିଥିଲେ । ସେ ମଧ୍ୟ

---

12- ନରସିଂହପୁର ତାମ୍ରଶାସନ, Inscriptions of Orissa. vol. IV p. 227.

ମଂଦିରର ଏକ ଅଂଶ ନିର୍ମାଣ କରିବାରେ ସଫଳ ହୋଇଥିଲେ । କିନ୍ତୁ ତାଙ୍କର ଅଳ୍ପ ବର୍ଷର ଶାସନ ହେତୁ ପୁରୁଷୋତ୍ତମ କ୍ଷେତ୍ରରେ ମଂଦିର ନିର୍ମାଣ କାର୍ଯ୍ୟ ବନ୍ଦ ହୋଇ ଯାଇଥିଲା । ଏହି ଦୃଷ୍ଟିରୁ ପୁରୁଷୋତ୍ତମ କ୍ଷେତ୍ରର ଏହି ସ୍ଥାନରେ ପୁରୁଷୋତ୍ତମ ଉପାସନା ତଥାପି ହୋଇପାରିନଥିଲା । ଉତ୍କଳ ଖଣ୍ଡରେ ବର୍ଣ୍ଣିତ ହୋଇଛି ଯେ ପୁରୁଷୋତ୍ତମ ମଂଦିରର ଗର୍ଭ ପ୍ରତିଷ୍ଠାକାଳରେ ଇନ୍ଦ୍ରଦ୍ୟୁମ୍ନ ବ୍ରହ୍ମଲୋକକୁ ଯାତ୍ରା କରିଥିଲେ । ଏହି ପ୍ରସଙ୍ଗଟିକୁ ଦ୍ୱିତୀୟ ଯଯାତିଙ୍କ ମଂଦିର ନିର୍ମାଣ କାର୍ଯ୍ୟ ସହିତ ଜଡ଼ିତ କରାଯାଇପାରେ । ଦ୍ୱିତୀୟ ଯଯାତିଙ୍କ ପରେ ଅନ୍ୟ ସୋମବଂଶୀ ରାଜାମାନେ ପୁରୁଷୋତ୍ତମ କ୍ଷେତ୍ରରେ ବୈଷ୍ଣବ ଧର୍ମର ଅଗ୍ରଗତି ପଇଁ ଉଦାସୀନ ଥିବାରୁ ଏହି ସ୍ଥାନର ଅସଂପୂର୍ଣ୍ଣ ପୁରୁଷୋତ୍ତମ ମନ୍ଦିର ଜୀର୍ଣ୍ଣ ହେବାକୁ ଲାଗିଲା । ୧୧୧୮ ଖ୍ରୀଷ୍ଟାବ୍ଦରେ ରଚିତ ଦାସଗୋବା ତାମ୍ରଲେଖର ଲେଖକ ଏହି ପ୍ରସଙ୍ଗଟିକୁ ଜାଣିଥିଲେ ବୋଲି ବର୍ଣ୍ଣନା କରିଗଲେ ଯେ ଚୋଡ଼ଗଙ୍ଗଙ୍କ ପୂର୍ବ ରାଜାମାନେ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କାର୍ଯ୍ୟକୁ ଅବହେଳା କରିଥିଲେ (ଆଦ୍ୟ ନୃପୈରୁପେକ୍ଷିତଂ ଅୟଂ ପ୍ରାସାଦଂ)

ଏଣୁ ଚୋଡ଼ଗଙ୍ଗ ପୁରୁଷୋତ୍ତମ କ୍ଷେତ୍ରରେ ବୃହତ୍ ଜଗନ୍ନାଥ ମଂଦିର ନିର୍ମାଣ କରିବା ବେଳକୁ ସେଠାରେ ଏକ ମଂଦିର ଅସଂପୂର୍ଣ୍ଣ ଅବସ୍ଥାରେ ପଡ଼ିରହିଥିଲା ଏବଂ ପୁରୁଷୋତ୍ତମ ଏହି କ୍ଷେତ୍ରର ଅନ୍ୟ ଏକ ସ୍ଥାନରେ ସମୁଦ୍ରକୂଳ ନିକଟରେ ପୂଜିତ ହୋଇଥିଲେ । ଚୋଡ଼ଗଙ୍ଗ ଏହି ପୁରାତନ ଅସଂପୂର୍ଣ୍ଣ

---

13- ମାଦଳାପାଞ୍ଜିର ରାଜଭୋଗ ଚରିତରେ ବର୍ଣ୍ଣିତ ହୋଇଛି ଯେ ଅନଙ୍ଗଭୀମଙ୍କ କାଳରେ ଯଯାତିକେଶରୀଙ୍କ ନିର୍ମିତ ମଂଦିରଟିକୁ ଭାଙ୍ଗି ଦିଆଯାଇଥିଲା ଏବଂ ବୃହତ୍ ମଂଦିର ନିମାଣ କରାଯାଇଥିଲା । ମାଦଳାପାଞ୍ଜି, ୧୯୬୯, ପୃ ୩୦ । ରାଜଭୋଗ ଚରିତର ଲେଖକ ଚୋଡ଼ଗଙ୍ଗଙ୍କୁ ଅନଙ୍ଗଭୀମ ବୋଲି ଭୁଲରେ ଗ୍ରହଣ କରିଥିଲେ । କାରଣ ୧୬ ଶତାବ୍ଦି ପରେ ରଚିତ ଏହି ରାଜଭୋଗ ଚରିତ ରଚନାକାଳରେ ଓଡ଼ିଶାର ଜନଶ୍ରୁତିରେ ଚୋଡ଼ଗଙ୍ଗଙ୍କୁ ପୁରୁଷୋତ୍ତମ ମଂଦିରର ନିର୍ମାତା ରୂପେ ଗ୍ରହଣ କରାଯାଇନଥିଲା । ଏ ସଂପର୍କରେ ପରେ ଆଲୋଚନା କରାଯାଇଛି । ଶିଶୁ କୃଷ୍ଣଦାସଙ୍କର ଦେଉଳ ତୋଳା (ସପ୍ତଦଶ-ଅଷ୍ଟାଦଶ ଶତକର ରଚନା)ରେ ଏହି ପ୍ରସଙ୍ଗଟି ବର୍ଣ୍ଣିତ ହୋଇଛି—

"ଶଙ୍ଖନାଭି ମଣ୍ଡଳେ ଦେଉଳ ତୋଳାଇଲା
XXX ସାଠିଏ ହାତ ଦେଉଳ ପାତାଳେ ପୋତିଲା
ବିଶାଳହେ ହାତ ଦେଉଳ ଉଚ୍ଚକଲା"

ମଂଦିରଟିକୁ ଭାଙ୍ଗିଦେଇ ଏହା ଉପରେ ନୂତନ ମଂଦିର ନିର୍ମାଣ କରିବାକୁ ଉଦ୍ୟମ କରିଥିବେ[13] । ଏହି ଦୃଷ୍ଟିରୁ ଉତ୍କଳଖଣ୍ଡରେ ଚୋଡ଼ଗଙ୍ଗଙ୍କ ପ୍ରଥମ ଉଦ୍ୟମ ଭାବରେ ଗ୍ରହଣ କରାଯାଇନାହିଁ । ତେଣୁ ଷ୍ଟିଟେନକ୍ରୋନଙ୍କର ମତର ପରିବର୍ତ୍ତନ ଆବଶ୍ୟକ ଉତ୍କଳଖଣ୍ଡରେ ପ୍ରକ୍-ଗଙ୍ଗରାଜତ୍ୱ କାଳରେ ପୁରୁଷୋତ୍ତମ କ୍ଷେତ୍ରରେ ମଂଦିର ନିର୍ମାଣ କାର୍ଯ୍ୟ ଓ ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରେ ମଂଦିର ନିର୍ମାଣ କାର୍ଯ୍ୟ ମଧ୍ୟରେ ଥିବା ସମୟ ବ୍ୟବଧାନକୁ ଗ୍ରହଣ କରଯାଇନାହିଁ ।

ଐତିହାସିକ ଉପାଦାନ ସାହାଯ୍ୟରେ ଚୋଡ଼ଗଙ୍ଗ କେଉଁ ସମୟରେ ଏହି ମନ୍ଦିର ନିର୍ମାଣ କରିଥିଲେ ତାହାର ଆଲୋଚନା ଏ ପ୍ରସଙ୍ଗରେ ଏକାନ୍ତ ଆବଶ୍ୟକ । ଐତିହାସିକମାନେ ମତ ଦେଇଛନ୍ତି ଯେ ଚୋଡ଼ଗଙ୍ଗ ୧୧୩୫ ଖ୍ରୀଷ୍ଟାବ୍ଦ ପରେ (ଯେତେବେଳେ ସେ ରାଜ୍ୟ ବିଜୟ କାର୍ଯ୍ୟ ସମାପନ କରିଥିଲେ) ପୁରୁଷୋତ୍ତମ କ୍ଷେତ୍ରରେ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିଥିଲେ[14] ।

ପ୍ରକୃତରେ ଚୋଡ଼ଗଙ୍ଗ ୧୧୨୬ ଖ୍ରୀଷ୍ଟାବ୍ଦ ଠାରୁ ୧୧୩୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଦକ୍ଷିଣପୂର୍ବ ଭାରତର କ୍ଷୁଦ୍ରକ୍ଷୁଦ୍ର ରାଜ୍ୟ ଗୁଡ଼ିକ ବିଜୟ କରି ଆଞ୍ଚଳିକ ରାଜ୍ୟ ସଂଗଠନ ଯୋଜନା ସହିତ ସଂପୃକ୍ତ ଥିବାରୁ ପୁରୁଷୋତ୍ତମ କ୍ଷେତ୍ରରେ ମନ୍ଦିର ନିର୍ମାଣ କାର୍ଯ୍ୟ ୧୧୨୬ ଖ୍ରୀଷ୍ଟାବ୍ଦ ପୂର୍ବରୁ କିମ୍ବା ୧୧୩୫ ଖ୍ରୀଷ୍ଟାବ୍ଦ ପରେ ଆରମ୍ଭ ହୋଇଥିବ । କିନ୍ତୁ ଅଭିଲେଖୀୟ ଉପାଦାନରୁ ପ୍ରମାଣିତ ହୁଏ ଯେ ସେ ଜାହ୍ନବୀ ତୀରସ୍ଥ ବିହାର ପାଟକ ନାମକ ସ୍ଥାନରେ ୧୧୩୬ ଖ୍ରୀଷ୍ଟାବ୍ଦ ଠାରୁ ୧୧୪୧-୪୨ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ଗଙ୍ଗାସ୍ନାନ ପାଇଁ ଅବସ୍ଥାନ କରିଥିଲେ[15] । ଏଣୁ ଏ ଦୃଷ୍ଟିରୁ ଏହି ନିର୍ମାଣ କାର୍ଯ୍ୟ ୧୧୪୨ ଖ୍ରୀଷ୍ଟାବ୍ଦ ପରେ ଆରମ୍ଭ ହୋଇଥିବ ବୋଲି ମତ ଦିଆଯାଇ-ପାରେ । କିନ୍ତୁ ଏହି ମତକୁ ଗ୍ରହଣ କରିହେବ ନାହିଁ । କାରଣ ଏପରି ବୃହତ୍ ମନ୍ଦିର (ଦେଉଳ ଓ ଜଗମୋହନ) ୫ ବର୍ଷ (୧୧୪୨-୪୭ ଖ୍ରୀଷ୍ଟାବ୍ଦ) ମଧ୍ୟରେ ସଂପୂର୍ଣ୍ଣ ହେବା ସମ୍ଭବ ନୁହେଁ । ୧୧୯୮ ଖ୍ରୀଷ୍ଟାବ୍ଦର ତାମ୍ରଫଳକରେ ଚୋଡ଼ଗଙ୍ଗ ତାଙ୍କ ରାଜତ୍ୱ କାଳରେ ନିଷ୍ଚିତ ଭାବରେ ଏହି ମନ୍ଦିର ନିର୍ମାଣ କରିଥିବାର ସୂଚନା ଥିବାରୁ ପାଞ୍ଚ ବର୍ଷ ମଧ୍ୟରେ ଏହାକୁ ସଂପୂର୍ଣ୍ଣ କରିଥିବା କଥା ସତ୍ୟ ନୁହେଁ । ଅନ୍ୟ ପକ୍ଷରେ ଚୋଡ଼ଗଙ୍ଗ ମନ୍ଦିର ନିର୍ମାଣ କାର୍ଯ୍ୟକୁ ଉପେକ୍ଷା

---

14- Sircar, D. C., Op. cit., p. 75
Mahatab, H K., Op. cit., 1959, p. 204.
Stietencron, H. v., CJRTO, p 74.

କରି ହଠାତ୍ ବିହାରପାଟକକୁ ଯାତ୍ରା କରିବେ କାହିଁକି ? ଏଥିରୁ ଅନୁମାନ ହୁଏ ଯେ ଚୋଡଗଙ୍ଗ ମନ୍ଦିର ନିର୍ମାଣ କାର୍ଯ୍ୟ ୧୧୨୭ ଖ୍ରୀଷ୍ଟାବ୍ଦ ପୂର୍ବରୁ ସମାପ୍ତ କରିଥିଲେ ।

ଚୋଡଗଙ୍ଗ କଳିଙ୍ଗରାଜ୍ୟର ରାଜାଥିବା ପର୍ଯ୍ୟନ୍ତ ଶୈବଧର୍ମ ତାଙ୍କ ରାଜଧର୍ମଧାରାର ମୁଖ୍ୟ ଅଂଶ ଥିଲା । ଅନ୍ତତଃ ୧୦୯୬ ଖ୍ରୀଷ୍ଟାବ୍ଦ ପର୍ଯ୍ୟନ୍ତ ତାଙ୍କର କେବଳ 'ପରମ ମାହେଶ୍ୱର' ଧର୍ମସଂପର୍କିତ ରାଜକୀୟଉପାଧି ହିସାବରେ ତାମ୍ରଲେଖ ମାନଙ୍କରେ ସୂଚିତ ହୋଇଥିଲା[16] । ମାତ୍ର ୧୧୦୮ ଖ୍ରୀଷ୍ଟାବ୍ଦରେ ମୁଖଲିଙ୍ଗମ୍ ଠାରୁ ପ୍ରାପ୍ତ ତାମ୍ରଫଳକରେ ସେ ପ୍ରଥମେ 'ପରମ ମାହେଶ୍ୱର' ଓ ପରେ 'ପରମ ବୈଷ୍ଣବ' ବୋଲି ସୂଚନା ରହିଛି[17] । ଏଥିରୁ ଏହି ସିଦ୍ଧାନ୍ତ ଗ୍ରହଣ କରଯାଇପାରେ ଯେ ୧୦୯୬ ଖ୍ରୀଷ୍ଟାବ୍ଦ ପରେ ଏବଂ ୧୧୦୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଚୋଡଗଙ୍ଗ ତାଙ୍କ ରାଜଧର୍ମଧାରାରେ ବୈପ୍ଳବିକ ପରିବର୍ତ୍ତନ ଆଣିଥିଲେ । ଶୈବଧର୍ମ ପରି ସେ ବୈଷ୍ଣବ ଧର୍ମକୁ ଏହି ସମୟରୁ ସମର୍ଥନ ଜଣାଇଥିଲେ[18] । ୧୧୦୮ ଖ୍ରୀଷ୍ଟାବ୍ଦର ତାମ୍ରଫଳକରେ ଚୋଡଗଙ୍ଗ ପରାଜିତ ଉତ୍କଳରାଜାଙ୍କୁ ସିଂହାସନରେ ବସାଇଥିଲେ ବୋଲି ବର୍ଣ୍ଣନା କରଯାଇଛି[19] । କିନ୍ତୁ ୧୦୯୬ ଖ୍ରୀଷ୍ଟାବ୍ଦର ଅଭିଲେଖରେ ଏହି ପ୍ରସଂଗର ବର୍ଣ୍ଣନା ନାହିଁ[20] । ଏଣୁ ଚୋଡଗଙ୍ଗଙ୍କର ଉତ୍କଳବିଜୟ ସହିତ ବୈଷ୍ଣବ ଧର୍ମକୁ ସମର୍ଥନ କରିବା କଥା କେତେକାଂଶରେ ଜଡ଼ିତ । ୧୧୦୮ ଖ୍ରୀଷ୍ଟାବ୍ଦ ପୂର୍ବରୁ ଓ ୧୦୯୬ ଖ୍ରୀଷ୍ଟାବ୍ଦପରେ ଚୋଡଗଙ୍ଗ ଉତ୍କଳ ବିଜୟ କରିବା କାଳରେ ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ କରିଥିଲେ ବୋଲି ଅନୁମାନ ହୁଏ । ସେହି ସମୟରୁ ସେ ପୁରୁଷୋତ୍ତମ ତତ୍ତ୍ୱ ସହିତ ପରିଚିତ ହେଲେ । କିନ୍ତୁ ସେହି କାଳରେ ମଧ୍ୟ ସେ ଉତ୍କଳର ସାର୍ବଭୌମ ସମ୍ରାଟ ହୋଇ ନଥିଲେ । ସେତେବେଳେ କେବଳ ପରାଜିତ ଉତ୍କଳ ସମ୍ରାଟଙ୍କୁ ସିଂହାସନରେ

---

15- ଦାଶ, କୈଳାସ ଚନ୍ଦ୍ର, "ମନ୍ଦାରଗିରି ଓ ଦେବମନ୍ଦାରନ୍", ନବପତ୍ର, ସଂପାଦକ-ରଜନୀକାନ୍ତ ଦାସ, କଲଚରାଲ ଏକାଡେମୀ, ରାଉରକେଲା, ଷୋଡଶ ବର୍ଷ, ପ୍ରଥମ ସଂଖ୍ୟା, ୧୯୮୭, ପୃ. ୭୫-୮୪ ।
ଚିନ୍ନାବାଦାମୁ ତାମ୍ରଫଳକ, Epigraphia Andhrica, vol. II, Hyderabad, p. 71-72.

16- ଅଦପାକ ତାମ୍ରଶାସନ, ଭାରତୀ, ୧୯୫୪, ଅକ୍ଟୋବର, ପୃ.୪୩୧ ୪୩୨. ଦାଶ, କୈଳାସ ଚନ୍ଦ୍ର, ଗଂଗେଶ୍ୱର-ଚୋଡଗଙ୍ଗ ଓ ବୈଷ୍ଣବ ଧର୍ମ । ନବପତ୍ର, ୧୯୮୭, ଦ୍ୱିତୀୟ ସଂଖ୍ୟା, ପୃ. ୧୫-୧୭ ।

ବଯାଇଥିଲେ[21] । ଏଣୁ ସାମ୍ବିଧାନିକ ଦୃଷ୍ଟିକୋଣରୁ ସୋମବଂଶୀ ଶାସନ ସେତେବେଳେ ମଧ୍ୟ ଉତ୍କଳରେ ଥିଲା । କିନ୍ତୁ ସେତେବେଳେ ଉତ୍କଳର କିଛି ଅଂଶ (ଏଥିରେ ଭୁବନେଶ୍ୱର-ପ୍ରାଚୀ-କୁଶଭଦ୍ରା ଅଞ୍ଚଳ ତଥା ପୁରୁଷୋତ୍ତମ କ୍ଷେତ୍ର ଅନ୍ତର୍ଗତ) ଗଙ୍ଗ ରାଜ୍ୟର ଅଧିନକୁ ଆସିଯାଇଥିଲା । ସୋମବଂଶୀ ସମ୍ରାଟ ପୁରଞ୍ଜୟ ଏବଂ କର୍ଣ୍ଣଦେବଙ୍କ ଅଧିନରେ ଉତ୍ତରରାଜ୍ୟର ମହାନଦୀର ଅପର ପାର୍ଶ୍ୱ ଠାରୁ ଅନ୍ୟ ଅଞ୍ଚଳ ଗୁଡିକ ରହିଥିଲା । ଏଣୁ ଏହି କାଳରେ ଚୋଡଗଙ୍ଗ ବୈଷ୍ଣବ ଧର୍ମ ପ୍ରତି ଉଦାର ଥିଲେ ମଧ୍ୟ ମନ୍ଦିର ନିର୍ମାଣ କାର୍ଯ୍ୟ ଆରମ୍ଭ କରିନଥିଲେ । ପୁରୁଷୋତ୍ତମ କ୍ଷେତ୍ରରେ ବୃହତ୍ ମନ୍ଦିର ନିର୍ମାଣ ତାଙ୍କ ଉତ୍କଳ ବିଜୟର ଦ୍ୱିତୀୟ ପର୍ଯ୍ୟାୟ ପରେ (ଅର୍ଥାତ ୧୧୧୨-୧୪ ଖ୍ରୀଷ୍ଟାବ୍ଦ ମଧ୍ୟରେ) ଆରମ୍ଭ ହୋଇଥିଲା । ଏହି ସମୟରୁ ଚୋଡଗଙ୍ଗ ମଂନ୍ଦିର ନିର୍ମାଣ ପାଇଁ ଉଦ୍ୟମ କରିଥିଲେ । ଦୁଇଟି ଦିଗରୁ ସେ ବିବେଚନା କରି ମଂନ୍ଦିର ନିର୍ମାଣ କରିଥିଲେ ।

(୧) ଉତ୍କଳର ସୋମବଂଶୀ ନରପତିମାନେ ଶୈବାନୁରାଗୀ ହୋଇଥିବା ଦ୍ୱାରା ଶୈବଧର୍ମର ବ୍ୟାପକ ପ୍ରସାର ଘଟିଲା । ଭୁବନେଶ୍ୱର-ଲିଙ୍ଗରାଜ ମନ୍ଦିର ନିର୍ମାଣ ପରେ ଏହାହିଁ ସୋମବଂଶୀ ରାଜାମାନଙ୍କର ଶୈବଧର୍ମ ପ୍ରତି ଅନୁରାଗର ପରମ ଉଦାହରଣ । ଯଦିବା ପୁରୁଷୋତ୍ତମ କ୍ଷେତ୍ରରେ ପୁରୁଷୋତ୍ତମ ଉପାସନା ପ୍ରତି ସୋମବଂଶୀ ରାଜାମାନେ ଉଦାରଥିଲେ, ତଥାପି ଶୈବଧର୍ମ ବିଶେଷ କ୍ଷମତାଶାଳୀ ହୋଇଥିଲା । ଚୋଡଗଙ୍ଗ ସୋମବଂଶୀ ରାଜାମାନଙ୍କର ପୁରୁଷୋତ୍ତମ କ୍ଷେତ୍ର ପ୍ରତି ଏହି ଉଦାସୀନତା ବିଷୟ ଉତ୍କଳ ବିଜୟର ପ୍ରଥମ ପର୍ଯ୍ୟାୟରେ . (୧୧୦୮ ଖ୍ରୀଷ୍ଟାବ୍ଦର ବହୁବର୍ଷ ପୂର୍ବରୁ) ଜାଣିଥିଲେ । ଏହି ବିଷୟ ଉତ୍କଳର କିଛି ବୈଷ୍ଣବ ତାଙ୍କୁ ଜଣାଇଥିବେବୋଲି ଅନୁମାନ କରାଯାଏ । ଏଣୁ ଦ୍ୱିତୀୟ ପର୍ଯ୍ୟାୟରେ ସୋମବଂଶୀ ଶାସନର ଅବସାନ ପରେ ସେ ନିଜର କ୍ଷମତାକୁ ଦୃଢ଼ କରିବା ପାଇଁ ପୁରୁଷୋତ୍ତମଙ୍କ ପାଇଁ ବିଶାଳ ମଂନ୍ଦିର ନିର୍ମାଣ କରିବାକୁ ଚାହିଁଥିବେ ।

---

17- Epigraphia Andhrica, vol. IV, p. 47,
ଦାଶ, କୈଳାସଚନ୍ଦ୍ର, ନବପତ୍ର, ୧୯୮୬, ୨ୟ ସଂଖ୍ୟା, ପୃ-୧୬ ।

18- Dash, Kailash Chandra, "Gangeswara-Chodaganga and the temple of Sri Purusottama-Jagannatha, OHRJ, vol XXXII, Nos 3 and 4, p 69-74.

(୨) ଚୋଡଗଙ୍ଗଙ୍କର ବୈଷ୍ଣବଧର୍ମ ଗ୍ରହଣ ଏକ ରାଜନୈତିକ ନିଷ୍ପତ୍ତି ବୋଲି ଗବେଷକମାନେ ଗ୍ରହଣ କରିଛନ୍ତି[22] । ସେମାନେ ବିଶିଷ୍ଟାଦ୍ୱୈତପନ୍ଥୀ ରାମାନୁଜାଚାର୍ଯ୍ୟଙ୍କ ପ୍ରଚାରିତ ବୈଷ୍ଣବ ଧର୍ମ ଦ୍ୱାରା ଚୋଡଗଙ୍ଗ ଦୀକ୍ଷିତ ହୋଇଥିଲେ ବୋଲି ସ୍ଥିର କରିଛନ୍ତି । ଚୋଡଗଙ୍ଗ ପ୍ରକୃତରେ ରାମାନୁଜଙ୍କ ପ୍ରଚାରିତ ବୈଷ୍ଣବ ଧର୍ମ ଦ୍ୱାରା ପ୍ରଭାବିତ ହୋଇଥିଲେ ମଧ୍ୟ ଦୀକ୍ଷିତ ହୋଇନଥିଲେ । ଏହି ସଂପର୍କ ୧୧୦୮ ଖ୍ରୀଷ୍ଟାବ୍ଦ ପୂର୍ବରୁ ଏବଂ ୧୦୯୬ ଖ୍ରୀଷ୍ଟାବ୍ଦ ପରେ ସ୍ଥିର କରାଯାଇପାରିବ । ରାମାନୁଜଙ୍କର ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ ସଂପର୍କରେ ବିଭିନ୍ନ ସାହିତ୍ୟିକ ଗ୍ରନ୍ଥମାନଙ୍କରେ ବର୍ଣ୍ଣନା କରାଯାଇଛି ଏବଂ ସେହି ଘଟଣାଟି ସତ୍ୟ[23] । ରାମାନୁଜଙ୍କର ଚୋଡଗଙ୍ଗଙ୍କ ସହିତ ସାକ୍ଷାତ ସଂପର୍କରେ କିଛି ଅଭିଲେଖୀୟ ସୂଚନା ଏ ପର୍ଯ୍ୟନ୍ତ ନ ମିଳିଥିଲେ ମଧ୍ୟ ସେ ପୁରୁଷୋତ୍ତମ କ୍ଷେତ୍ରରେ ବୈଷ୍ଣବ ଧର୍ମ ପ୍ରଚାର କାର୍ଯ୍ୟରେ ବିଫଳ ହେବା ପରେ କୂର୍ମପୀଠକୁ ଆସି ବୈଷ୍ଣବ ପୀଠରେ ତାହାକୁ ରୂପାନ୍ତରିତ କରିଥିଲେ । ସେହି କାଳରେ ଚୋଡଗଙ୍ଗ ତାଙ୍କ ସଂପର୍କରେ ଆସିଥାଇପାରନ୍ତି । ରାମାନୁଜ ୧୦୯୬ ଠାରୁ ୧୧୦୮ ଖ୍ରୀଷ୍ଟାବ୍ଦ ମଧ୍ୟରେ କଳିଙ୍ଗରେ ଥିଲେ ଏବଂ ସେହି ସମୟରେ ସେ ହୟଶାଳ ରାଜ୍ୟକୁ ଯାଇନଥିଲେ ବୋଲି କିଛି ଐତିହାସିକ ଉପାଦାନରୁ ଜଣାପଡ଼ିଛି[24] । ଏହି ବୈଷ୍ଣବ ଧର୍ମ ପ୍ରଚାର କଳିଙ୍ଗରେ ସଫଳ ହେବାପରେ ସେ ହୟଶାଳ ରାଜ୍ୟକୁ ୧୧୧୪ ଖ୍ରୀଷ୍ଟାବ୍ଦ ପରେ ଯାତ୍ରା କରିଥିଲେ ଓ ୧୧୧୭-୧୮ ଖ୍ରୀଷ୍ଟାବ୍ଦ ସୁଦ୍ଧା ସେ ହୟଶାଳ ନୃପତି ବିଟିଗ-ବିଷ୍ଣୁବର୍ଦ୍ଧନଙ୍କୁ ବୈଷ୍ଣବ ଧର୍ମରେ ଦୀକ୍ଷିତ କରିଥିଲେ[25] । ଏଣୁ ରାମାନୁଜ ପୁରୁଷୋତ୍ତମ କ୍ଷେତ୍ର ପର୍ଯ୍ୟଟନ, ଏଠାରେ ପୂଜା ଏବଂ ମୂର୍ତ୍ତିତତ୍ତ୍ୱର ପରିବର୍ତ୍ତନ ଉଦ୍ୟମ ବିଫଳ ହେବା ପରେ ଏ ସଂପର୍କରେ ଗଙ୍ଗସମ୍ରାଟ ଚୋଡଗଙ୍ଗଙ୍କୁ ଜଣାଇଥିବା ମନେହୁଏ । ସେତେବେଳେ ଚୋଡଗଙ୍ଗ ବୈଷ୍ଣବ ଧର୍ମର ମହତ୍ତ୍ୱ ଜାଣିଥିବେ । କିନ୍ତୁ ଶୈବଧର୍ମ ପ୍ରତି ତାଙ୍କର ପାରଂପାରିକ ଭକ୍ତି ଥିବାରୁ ସେ ବୈଷ୍ଣବ ଧର୍ମରେ ରାମାନୁଜଙ୍କ ଦ୍ୱାରା ଦୀକ୍ଷିତ

---

19- Dash, Kailash Chandra, "A study on the Conquest of Utkala by the Ganga king Chodaganga," OHRJ, vol. XXXI, Nos. 2, 3 and 4, p. 131-135.

20- Ibid., p. 131.

21- Ibid , p. 131-137.

ହୋଇନଥିଲେ । ଚୋଡଗଙ୍ଗଙ୍କ ରାଜ୍ୟ ମଧ୍ୟରେ ଥିବା ଶ୍ରୀକୂର୍ମମ ମନ୍ଦିରକୁ ବୈଷ୍ଣବ ପୀଠରେ ପରିଣତ କରିବା ଘଟଣା ତାଙ୍କ ରାଜତ୍ୱର ୨୮ ଅଙ୍କ ପୂର୍ବରୁ ଘଟିଥିଲା[26] । ଏହି ଦୃଷ୍ଟିରୁ ଚୋଡଗଙ୍ଗ ପୁରୁଷୋତ୍ତମ କ୍ଷେତ୍ର ସଂପର୍କରେ ପ୍ରଥମ ଜ୍ଞାନ ରାମାନୁଜଙ୍କଠାରୁ ସଂଗ୍ରହ କରିଥିବେ ବୋଲି ଏ ଲେଖକ ଅନୁମାନ କରେ । ପରେ ଉତ୍କଳ ବିଜୟ କରି ସେ ପୁରୁଷୋତ୍ତମ କ୍ଷେତ୍ରରେ ପ୍ରବେଶ କରିଥିବେ ଓ ମନ୍ଦିର ନିର୍ମାଣ ଯୋଜନା ଚିନ୍ତା କରିଥିବେ ।

ଚୋଡଗଙ୍ଗ ଉତ୍କଳ ବିଜୟ କାର୍ଯ୍ୟ ୧୧୧୨-୧୩ ଖ୍ରୀଷ୍ଟାବ୍ଦ ପରେ ବା ୧୧୧୩ ୧୪ ଖ୍ରୀଷ୍ଟାବ୍ଦ ବେଳକୁ ସଫଳ ହୋଇଥିଲା । ଏହି ସଂପୂର୍ଣ୍ଣ ବିଜୟ ପ୍ରସଙ୍ଗ ତି ୧୧୧୮ ଖ୍ରୀଷ୍ଟାବ୍ଦର ଦୁଇଟି ତାମ୍ରଫଳକରେ ସୂଚିତ ହୋଇଛି[27] । ୧୧୨୪ ଖ୍ରୀଷ୍ଟାବ୍ଦର ଏକ ତାମ୍ରଫଳକରେ ସେ ସ୍ପଷ୍ଟ ପ୍ରକାଶ କରିଥିଲେ ଯେ କର୍ଣ୍ଣଦେବଙ୍କୁ ଜନ୍ମଭୂମିକୁ ଡାକିନେଇ ପରାସ୍ତ କରି ଉତ୍କଳ ସାମ୍ରାଜ୍ୟ ଲକ୍ଷ୍ମୀଙ୍କୁ ଛେଦନ କରିଥିଲେ[28] । ଏଣୁ ଉତ୍କଳ ରାଜ୍ୟ ତାଙ୍କର ବୃହତ୍ ସାମ୍ରାଜ୍ୟର ଅଙ୍ଗ ରୂପେ ୧୧୧୮ ଖ୍ରୀଷ୍ଟାବ୍ଦ ପୂର୍ବରୁ ୧୧୧୩ ଖ୍ରୀଷ୍ଟାବ୍ଦପରେ ପରିଚିତ ହେଲା । ୧୧୧୩-୧୪ ଖ୍ରୀଷ୍ଟାବ୍ଦ ଠାରୁ ୧୧୨୪-୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଚୋଡଗଙ୍ଗ

---

22- ଡକ୍ଟର ହରମାନ୍ କୁଲକେ, ଏଚ ଭି. ଷ୍ଟିଟେନ୍‌କ୍ରୋନ୍, ଏ. ଏସ୍‌ମାନ୍, ଡକ୍ଟର ଗଗନେନ୍ଦ୍ର ନାଥ ଦାଶ ଏବଂ ଡକ୍ଟର ଗୟାଚରଣ ତ୍ରିପାଠୀ ଏହି ମତକୁ ନିଜନିଜର ଆଲୋଚନାରେ ଗୁରୁତ୍ୱ ଦେଇଛନ୍ତି ।

The Cult of Jagannatha and the Regional Tradition of Orissa, 1978, Manohar Publications, Delhi.

23- Dash, G. N., "The Evolution of the Priestly Power., The Gangavamsa Period", CJRTO, p. 157-158.

24- ଦାଶ, କୈଳାସଚନ୍ଦ୍ର, "ଗଙ୍ଗେଶ୍ୱର-ଚୋଡଗଙ୍ଗ ଓ ବୈଷ୍ଣବଧର୍ମ"; ନବପତ୍ର, ୧୯୮୭, ଦ୍ୱିତୀୟ ସଂଖ୍ୟା, ପୃ. ୨୦-୨୧ । ଏହି ନିବନ୍ଧରେ ମୁଁ ରମାନୁଜ-ଚୋଡଗଙ୍ଗ ସଂପର୍କରେ ବିପରିତ ମତ ଦେଇଥିଲି । ପରେ ଏହି ମତର ପରିବର୍ତ୍ତନ କରି ଶ୍ରୀ କୂର୍ମମ ଶିଳାଲିପି (IO, vol. III, part. I, No 59) ଭିତ୍ତିରେ ଏହି ସଂପର୍କର ଆଭାସ ପାଇଥିଲି ।

25- Sale-tore, R. N., Encyclopaedia of Indian Culture, vol. IV, 1984, p. 1227-28.

କୌଣସି ରାଜ୍ୟ ଜୟ କରିଥିବାର ସୂଚନା ନାହିଁ । ବେଙ୍ଗୀ, ଦଣ୍ଡଭୁକ୍ତି, ଦକ୍ଷିଣ କୋଶଳ ଏବଂ ମନ୍ଦାରଗଡ଼ ପ୍ରଭୃତି ରାଜ୍ୟ ଜୟକାର୍ଯ୍ୟ ୧୧୨୪-୨୫ ଖ୍ରୀଷ୍ଟାବ୍ଦ ଠାରୁ ଆରମ୍ଭ ହୋଇ ୧୧୩୫ ଖ୍ରୀଷ୍ଟାବ୍ଦ ଯୁଦ୍ଧା ସମାପ୍ତ ହୋଇଥିଲା । ୧୧୨୦-୨୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ବେଂଗୀ ଗୋଦାବରୀ ରାଜ୍ୟକୁ ପଶ୍ଚିମ ଚାଲୁକ୍ୟ ନୃପତି ଷଷ୍ଠ ବିକ୍ରମାଦିତ୍ୟ ନିଜ ଅଧିନକୁ ଆଣିଥିଲେ ଏବଂ ଚୋଡ଼ଗଙ୍ଗଙ୍କୁ ପରାସ୍ତ କରିଥିଲେ । ଅଥଚ ଏହି କାଳରେ ବିଚକ୍ଷଣ ସାମ୍ରାଜ୍ୟବାଦୀ ଚୋଡ଼ଗଙ୍ଗ ବେଂଗୀ ଅଞ୍ଚଳକୁ ଅଧିକାର କରିବାକୁ ଇଚ୍ଛା କରି ପାରିନଥିଲେ । ଏହାର କାରଣ ନୁହେଁ ଯେ ଚାଲୁକ୍ୟ ସୈନ୍ୟବାହିନୀକୁ ଦେଖି ଭୟ ପାଇଗଲେ । ପୁଣି ଗୋଦାବରୀ ପର୍ଯ୍ୟନ୍ତ ତାଙ୍କ ରାଜ୍ୟର ସୀମା ହେବା ଉଚିତ-ଏହା ଥିଲା ତାଙ୍କ ସାମ୍ରାଜ୍ୟବାଦୀ ଯୋଜନାର ଏକଲକ୍ଷ୍ୟ । କିନ୍ତୁ ଉତ୍କଳ ଅଧିକାର ପରେ ଚୋଡ଼ଗଙ୍ଗ କଳିଂଗ-ଉତ୍କଳକୁ ଏକତ୍ରକରି

---

26- ଶ୍ରୀକୂର୍ମମ ଶିଳାଲିପି ଶକାବ୍ଦ ୧୦୩୫ ଏବଂ ଚୋଡ଼ଗଙ୍ଗ ଦେବଙ୍କ ରାଜତ୍ୱର ୨୮ ସ୍ତାହି (ରାଜକୀୟ ବର୍ଷ)ରେ ଉତ୍କୀର୍ଣ୍ଣ ହୋଇଥିଲା । ସତ୍ୟନାରାୟଣ ରାଜଗୁରୁ ଏହି ଶକାବ୍ଦ ୧୦୩୫କୁ ଗ୍ରହଣ କରି ସ୍ତାହିକୁ ୩୮ ବୋଲି ସ୍ଥିରକଲେ । (IO, vol. III, part I, No. 59) କିନ୍ତୁ ୧୦୩୬ଶକାବ୍ଦରେ ଚୋଡ଼ଗଙ୍ଗଙ୍କର ୩୭ ଅଙ୍କ ପଡିଥିଲା ବୋଲି ଲିଂଗରାଜ ମନ୍ଦିର ଶିଳାଲିପିରୁ ଜଣାଯାଏ (EI, vol. XXX, p. 29.) । ଏଣୁ ରାଜଗୁରୁଙ୍କର ଏହି ଅନୁମାନ ଯଥେଷ୍ଟ ନୁହେଁ । ମନ୍ଦିରରେ ଲିପିର ଲେଖକ ଅନେକ ସମୟରେ ରାଜକୀୟ ବର୍ଷ/ଶକାବ୍ଦକୁ ଭୁଲରେ ଗଣିଥାଏ । ଏହି ଶିଳାଲିପିଟି ରାଜାଙ୍କ ତରଫରୁ ଲେଖାଯାଇନଥିଲା । ଏହା ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳର । କିନ୍ତୁ ତେଲିକାର ସଂପ୍ରଦାୟ ତରଫରୁ ଶ୍ରୀକୂର୍ମମରେ ଦାନବ୍ୟବସ୍ଥା ବିଷୟ ଏଥିରେ ଉପସ୍ଥାପିତ ହୋଇଛି । ଏଣୁ ସେହି ସଂପ୍ରଦାୟ ସ୍ତାହିକୁ ୨୮ ହିସାବରେ ଠିକ୍ ଚିନ୍ତାକରିଥିବେ ଏବଂ ଶକବର୍ଷ ୧୦୨୫ କୁ ୧୦୩୫ବୋଲି ଲେଖିଥିବେ । ଯଦିବା ଏହି ଶକାବ୍ଦ ୧୦୩୫ କୁ ଠିକ୍ ବୋଲି ଧରଯାଏ, ଏହି ଶିଳାଲିପି ଯେଉଁ ବର୍ଷରୁ ଶ୍ରୀକୂର୍ମମ ବୈଷ୍ଣବପୀଠ ହେଲା ବୋଲି ପ୍ରକାଶ କରେନାହିଁ । ଶ୍ରୀକୂର୍ମମ ବୈଷ୍ଣବ ପୀଠରେ ପରିଣତ ହେବା ଶକାବ୍ଦ ୧୦୩୫ (୧୧୧୩ ଖ୍ରୀଷ୍ଟାବ୍ଦ) ପୂର୍ବର ଘଟଣା ।

27- Dash, Kailash Chandra, OHRJ, vol. XXXI, Nos. II, III and IV, p. 137.

28- Ibid., p. 136-142

ଶାସନ କରିବାକୁ ଇଚ୍ଛାକରି ପ୍ରଥମେ ଜନମତକୁ ତୁଷ୍ଟ କରିବାକୁ ପଡ଼ିଲା । ସେଥିପାଇଁ ଅପରିଚିତ ଉତ୍କଳରେ ସେ ଧର୍ମ କାର୍ଯ୍ୟରେ ମନଦେଇଥିଲେ । ଏହି ଦଶ ବର୍ଷ (୧୧୧୪-୨୪ ଖ୍ରୀଷ୍ଟାବ୍ଦ) ମଧ୍ୟରେ ରାଜ୍ୟବିଜୟ କାର୍ଯ୍ୟକୁ ସ୍ଥଗିତ ରଖି ସେ ଉତ୍କଳରେ ପୁରୁଷୋତ୍ତମଙ୍କ ପାଇଁ ବୃହତ୍ ମନ୍ଦିର ନିର୍ମାଣ କାର୍ଯ୍ୟରେ ମନ ବଳାଇଥିଲେ । ଏହି ସମୟରେ ସେ ପୁରୁଷୋତ୍ତମ କ୍ଷେତ୍ରରେ ଥିବାର କେତେକ ପ୍ରମାଣ ରହିଛି ।

(୧) ୧୧୧୮ ଖ୍ରୀଷ୍ଟାବ୍ଦର ଦୁଇଟି ତାମ୍ରଫଳକରେ ଚୋଡଗଙ୍ଗ କେବଳ "ପରମ ବୈଷ୍ଣବ" ବୋଲି ପ୍ରକାଶ କରି ସିନ୍ଦୂରପୁର ନିବାସୀମାନଙ୍କ ସହିତ ସେ ଗ୍ରାମଦାନ କରିଛନ୍ତି । ଏହି ସିନ୍ଦୂରପୁରକୁ ଏ ଲେଖକ ପୁରୁଷୋତ୍ତମ କ୍ଷେତ୍ରର ଅନ୍ୟ ନାମ ବା ଏକ ଅଂଶ ସାରଳା ମହାଭାରତ ମୂଷଳୀ ପର୍ବ ବର୍ଣ୍ଣିତ ସୁନ୍ଦରାଚଳ (ନୀଳସୁନ୍ଦର ଗିରି) ସହିତ ଚିହ୍ନିତ କରିଛି[29] ।

(୨) ମାର୍କଣ୍ଡେଶ୍ୱର ଶିଳାଲିପିରେ ବର୍ଣ୍ଣିତ ହୋଇଛି ଯେ ଚୋଡଗଙ୍ଗ ତାଙ୍କ ରାଜତ୍ୱର ୩୭ ଅଙ୍କରେ ପୁରୁଷୋତ୍ତମଙ୍କ ଅଂଗଭୋଗ ବ୍ୟବସ୍ଥା କରିଥିଲେ[30] ।

(୩) ନୃସିଂହ ମନ୍ଦିରର ଏକଲିପିରେ ୧୦୩୫ ଶକାବ୍ଦ (୧୧୧୩ ଖ୍ରୀଷ୍ଟାବ୍ଦ)ରେ ଚୋଡଗଙ୍ଗ ପୁରୁଷୋତ୍ତମଙ୍କ ପାଇଁ ଏକ ଦାନବ୍ୟବସ୍ଥା କରିଥିବାର ସୂଚନା ରହିଛି ।

ଏ ସବୁକୁ ଗ୍ରହଣ କରି ଅନୁମାନ କରାଯାଇପାରେ ଯେ ଚୋଡଗଙ୍ଗ ୧୧୧୩-୧୪ ଠାରୁ ୧୧୨୪ ଖ୍ରୀଷ୍ଟାବ୍ଦ ମଧ୍ୟରେ ପ୍ରାସାଦ ନିର୍ମାଣ କାର୍ଯ୍ୟରେ ଏଠାରେ ବ୍ୟସ୍ତଥିଲେ । ସେହି କାଳରେ ସେ ପ୍ରଥମେ ପୁରାତନ ପୁରୁଷୋତ୍ତମ ମନ୍ଦିରର ବିଗ୍ରହକୁ ଆଣି ନିଜ ନିର୍ବାଚିତ ସ୍ଥାନ ପାଖରେ ନୃସିଂହ ମନ୍ଦିରରେ ପୂଜା ବ୍ୟବସ୍ଥା କରିଥାଇପାରନ୍ତି । ୧୧୧୩ ଖ୍ରୀଷ୍ଟାବ୍ଦରୁ କ୍ରମାଗତ ଭାବରେ ଏହି

---

29- ନବପତ୍ର, ୧୯୮୭, ଦ୍ୱିତୀୟ ସଂଖ୍ୟା, ପୃ-୨୫; OHRJ, vol. XXXII, Nos. 3 and 4, p. 75.

30- OHRJ, vol. XXXII, Nos. 3 and 4, p. 75.
Srimandira (Jagannatha Temple Journal), 1985, January, p. 5, foot note-16.

ମନ୍ଦିରର ଅନେକ ଶିଳାଲିପିରେ ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରେ ପୁରୁଷୋତ୍ତମ ଉପାସନା ପାଇଁ ବିଭିନ୍ନ ଦାନବ୍ୟବସ୍ଥାର ପ୍ରମାଣ ରହିଛି ।

ନୃସିଂହ ମନ୍ଦିରର ଦକ୍ଷିଣପାର୍ଶ୍ୱ ଦ୍ୱାରରେ ଏକ ଲିପି ରହିଛି । ଏହି ଲିପିର ସମୟ ୧୦୩୫ ଶକାବ୍ଦ (ଶର-ଲୋକ-ଖେନ୍ଦୁ ଗଣିତେ) । ଏହି ଲିପିରେ ନାରାୟଣ ସ୍ୱାମୀ ପୁରୁଷୋତ୍ତମ ଏବଂ କଳିଙ୍ଗ ନୃପତି ଚୋଡ଼ଗଂଗଙ୍କ ବିଷୟ ଉଲ୍ଲେଖିତ ହୋଇଛି । ମହାଦ୍ୱାଦଶୀରେ ପୁରୁଷୋତ୍ତମଙ୍କର ଏକ ଅଖଣ୍ଡବତୀ ପାଇଁ ଖର୍ଚ୍ଚ ନିମନ୍ତେ ପଞ୍ଚନିଷ୍କ ଦାନ କରାଯାଇଥିଲା ୧୦୩୫ ଶକାବ୍ଦରେ । ଏହା ଉପରେ ଚୋଡ଼ଗଙ୍ଗଙ୍କ ରାଜତ୍ୱରେ ମହାଦ୍ୱାଦଶୀରେ ପୁରୁଷୋତ୍ତମଙ୍କ ପାଇଁ ଅଖଣ୍ଡବତୀ ନିମିତ୍ତ ଖର୍ଚ୍ଚ ଏକ ମାଳକାର ପରିବାର ଉପରେ ନ୍ୟସ୍ତ କରାଯାଇ-ଥିବାର ବିବରଣୀ ଅନ୍ୟଏକ ଶିଳାଲିପିରେ ସ୍ଥାନ ପାଇଛି । ତାହାର ଉପର ଲିପିରେ ଚୋଡ଼ଗଙ୍ଗ ରାଜତ୍ୱ କାଳରେ ବିଜୟା ଦ୍ୱଦଶୀରେ ପୁରୁଷୋତ୍ତମଙ୍କ ଅଖଣ୍ଡବତୀର ଘୃତ ନିମିତ୍ତ ନିଷ୍କଦାନ ବ୍ୟବସ୍ଥାର ବର୍ଣ୍ଣନା ରହିଛି । ଏହି ଲେଖକ ନୃସିଂହ ମନ୍ଦିରରେ ସେହି ସମସ୍ତଲିପି ମଧ୍ୟରୁ କିଛି ଲିପି ଅଧ୍ୟୟନ କରିପାରିଛି । ଏହା ବ୍ୟତୀତ ଚୋଡ଼ଗଙ୍ଗଙ୍କ ରାଜତ୍ୱ କାଳରେ ପୁରୁଷୋତ୍ତମଙ୍କ ପୂଜାପାଇଁ ଅନ୍ୟାନ୍ୟ ବ୍ୟବସ୍ଥାର ବର୍ଣ୍ଣନା ଏହି ମନ୍ଦିରର ବାମପାର୍ଶ୍ୱର ଏକ ସ୍ତମ୍ଭରେ ରହିଛି[31] । ଏହିପରି କେତୋଟି ଶିଳାଲିପିକୁ ଗ୍ରହଣ କରି ଏ ଲେଖକ ଏକଦା ସ୍ଥିର କରିଥିଲା ଯେ ଚୋଡ଼ଗଙ୍ଗ ୧୧୨୪-୨୫ ଖ୍ରୀଷ୍ଟାବ୍ଦ ବେଳକୁ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କରି ସାରିଥିଲେ ଓ ସେବା ପୂଜା ବ୍ୟବସ୍ଥା ସେ ସମୟରୁ ଆରମ୍ଭ କଲେ[32] । କାରଣ ଏହିଲିପି ଗୁଡିକ ୧୧୨୪ ଖ୍ରୀଷ୍ଟାବ୍ଦ ଠାରୁ ଉତ୍କୀର୍ଣ୍ଣ ହୋଇଥିଲା । କିନ୍ତୁ ଏହି ମତ ବର୍ତ୍ତମାନ ପରିବର୍ତ୍ତନ କରିଦିଆ ଯାଇପାରିବ । ଚୋଡ଼ଗଙ୍ଗ ୧୧୨୪ ୨୫ ଖ୍ରୀଷ୍ଟାବ୍ଦ ବେଳକୁ ମନ୍ଦିର ନିର୍ମାଣ କରିଥିବା କଥାରେ ସତ୍ୟତା ରହିଛି । ମାତ୍ର ପୁରୁଷୋତ୍ତମଙ୍କର ସେବା ପୂଜା ପାଇଁ ଏହାର ବହୁ ବର୍ଷ ପୂର୍ବରୁ ଦାନବ୍ୟବସ୍ଥା କରିଥିଲେ । ନୃସିଂହ ମନ୍ଦିରର ଲିପି ଗୁଡ଼ିକର ଅଧ୍ୟୟନରୁ ସ୍ପଷ୍ଟ ଜଣାଯାଏ ଯେ

---

31. ନବପତ୍ର, ୧୯୮୪, ଅକ୍ଟୋବର-ଡିସେମ୍ବର, ପୃ ୧୨୯-୧୩୦,
Srimandira (Jagannatha Temple), 1985, January, p. 6,
OHRJ, vol. XXXII, Nos. 3 and 4, p. 76 77.

32. ତତ୍ରୈବ ।

ଗଙ୍ଗସମ୍ରାଟ ଚୋଡ଼ଗଙ୍ଗଙ୍କର ରାଜତ୍ୱ କାଳରୁ (ଅର୍ଥାତ୍ ୧୧୦୮ ଖ୍ରୀଷ୍ଟାବ୍ଦ ଠାରୁ) ଉତ୍କଳରେ ପୁରୁଷୋତ୍ତମ ଉପାସନାକୁ ବିଶେଷ ଆଦର କରାଯାଇଥିଲା । ରାଜପୃଷ୍ଠପୋଷକତା ଦ୍ୱାରା ଏହି ଉପାସନା ସର୍ବଭାରତୀୟ ଧର୍ମଧାରଣାରେ ସ୍ୱତନ୍ତ୍ର ଆସନ ଲାଭକଲା ।

ଚୋଡ଼ଗଙ୍ଗ ନୂତନ ମନ୍ଦିର ନିର୍ମାଣ କରି ବିଗ୍ରହ ଗୁଡ଼ିକୁ ନୂତନ ମନ୍ଦିରରେ ୧୧୨୪-୨୫ ଖ୍ରୀଷ୍ଟାବ୍ଦ ବେଳକୁ ଅଧିଷ୍ଠିତ କରିଥିଲେ । ଏହାପରେ ସେ ପୁନର୍ବାର ରାଜ୍ୟ ବିଜୟ କାର୍ଯ୍ୟରେ ମନ ଦେଇଥିଲେ । ଏଥିପାଇଁ ସମ୍ଭବତଃ ୧୧୯୮ ଖ୍ରୀଷ୍ଟାବ୍ଦର ତାମ୍ରଫଳକରେ ଉତ୍କଳ ବିଜୟ କାର୍ଯ୍ୟ ସହିତ ଚୋଡ଼ଗଙ୍ଗଙ୍କର ମନ୍ଦିର ନିର୍ମାଣ କାର୍ଯ୍ୟକୁ ଯୋଡ଼ି ଦିଆଯାଇଛି । ତାହା ଜଣାଇଦିଏ ଯେ ଚୋଡ଼ଗଙ୍ଗଙ୍କ ଉତ୍କଳ ବିଜୟ ଓ ପୁରୁଷୋତ୍ତମ କ୍ଷେତ୍ରରେ ମନ୍ଦିର ନିର୍ମାଣ ୧୧୧୩-୧୪ ଖ୍ରୀଷ୍ଟାବ୍ଦ ଠାରୁ ୧୧୨୪-୨୫ ଖ୍ରୀଷ୍ଟାବ୍ଦ ମଧ୍ୟରେ ଓଡ଼ିଶା ଇତିହାସର ଦୁଇଟି ସ୍ମରଣୀୟ ଘଟଣା ।

## ( ୪ )

ଚୋଡ଼ଗଙ୍ଗ ପୁରୁଷୋତ୍ତମ-ଜଗନ୍ନାଥଙ୍କ ପାଇଁ ବୃହତ୍ ମନ୍ଦିର ନିର୍ମାଣ କରିଥିବାର ସୂଚନା ତାମ୍ରଲେଖରେ ସ୍ଥାନ ପାଇଥିଲେ ମଧ୍ୟ ଓଡ଼ିଶାର ଜନଶ୍ରୁତିରେ ଏ ପ୍ରସଙ୍ଗର ସାମାନ୍ୟ ସୂଚନା ମିଳେନାହିଁ । ଊନବିଂଶ ଶତାବ୍ଦୀ ପୂର୍ବରୁ ରଚିତ ହୋଇଥିବା ସାହିତ୍ୟିକ ଉପାଦାନ ଗୁଡ଼ିକରେ ଚୋଡ଼ଗଙ୍ଗ ଏହି ମନ୍ଦିର ନିର୍ମାଣ କରାଇଥିବାର ସୂଚନା ସ୍ଥାନ ପାଇନାହିଁ । ଏ ସମସ୍ତ ଉପାଦାନ ମଧ୍ୟରେ ଅନ୍ତର୍ଗତ ।

(୧) ମାଦଳାପାଞ୍ଜି (ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ସଂକଳନ)
(୨) କଟକ ରାଜବଂଶାବଳୀ (୩) ଗଙ୍ଗବଂଶାନୁଚରିତ ଚଂପୂ
(୪) ଓଡ୍ରରାଜବଂଶାବଳୀ (୫) ଭକ୍ତ ବାଳୁଗାଁ ଦାସିଆ ଭାଗବତ

ଏ ସମସ୍ତ ଉପାଦାନରେ ଚୋଡ଼ଗଙ୍ଗ ପୁରୁଷୋତ୍ତମ କ୍ଷେତ୍ରକୁ ଆସିଥିବାର ସୂଚନା ଥିଲେ ମଧ୍ୟ ମନ୍ଦିର ନିର୍ମାଣ କାର୍ଯ୍ୟ ସହିତ ତାଙ୍କୁ ସଂପୃକ୍ତ କରାଯାଇନାହିଁ ।

---

33- Sircar, D. C., Op. cit., 1971, p. 63.

ଓଡ୍ରରାଜ ବଂଶାବଳୀ, କଟକ ରାଜ ବଂଶାବଳୀ ଓ ପ୍ରାଚୀ ସମିତିର ମାଦଳାପାଞ୍ଜି ଅନ୍ତର୍ଗତ ରାଜଚରିତରେ ଚୋଡ଼ଗଙ୍ଗଙ୍କ ରାଜତ୍ୱ ପରେ ତାଙ୍କ ପରବର୍ତ୍ତୀ ରାଜାମାନେ ପୁରୁଷୋତ୍ତମଙ୍କ ମନ୍ଦିର ନିର୍ମାଣ କରୁଥିଲେ ବୋଲି ବର୍ଣ୍ଣନା ରହିଛି । ଅନଂଗଭୀମ ଦେବ ପୁରୁଷୋତ୍ତମଙ୍କ ପାଇଁ ଯେଉଁ ଶତେ ହାତ ଉଚ୍ଚର ମନ୍ଦିର ନିର୍ମାଣ କରିଥିଲେ ବୋଲି ପ୍ରାଚୀ ସମିତିର ମାଦଳାପାଞ୍ଜି ଓ କଟକ ରାଜ ବଂଶାବଳୀ ପ୍ରଭୃତିରେ ବର୍ଣ୍ଣନା କରାଯାଇଛି ତାହା ଅନଂଗଭୀମ ଦେବଙ୍କ ନିଜ ରାଜଧାନୀ ଅଭିନବ ବାରଣାସୀ କଟକରେ ଏକ ବୃହତ୍ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କରାଇଥିବା ପ୍ରସଂଗକୁ ବା ଚୋଡ଼ଗଙ୍ଗଙ୍କ କୀର୍ତ୍ତି ଅନଗଂଭୀମ ଦେବଙ୍କ ନାମରେ ଜନଶ୍ରୁତିରେ ସ୍ଥାନ ପାଇଯାଇଥିବା କଥାକୁ ସୂଚାଇ ଦିଏ[33] । ଏହି ବିବରଣୀକୁ ସତ୍ୟ ବୋଲି ଗ୍ରହଣ କରି ଏଦ୍ୱାର ମୂଳତତ୍ତ୍ୱର ଅନୁସନ୍ଧାନ ନକରି ଗବେଷକମାନେ ଊନବିଂଶ ଶତକରୁ ଅନଂଗଭୀମ ଦେବଙ୍କୁ ଏହି ମନ୍ଦିରର ନିର୍ମାତା ବୋଲି ଗ୍ରହଣ କରିନେଇ ଥିଲେ । ପୁଣି ଗଙ୍ଗରାଜତ୍ୱ କାଳରେ ଇନ୍ଦ୍ରଦ୍ୟୁମ୍ନ ଏହି ମନ୍ଦିରର ନିର୍ମାତା ବୋଲି ପୁରାଣ ସୃଷ୍ଟି ହେବାରୁ ପ୍ରକୃତ ନିର୍ମାତା ସଂପର୍କରେ ଜନଶ୍ରୁତିରେ କିଛି ରହିପାରିଲା ନାହିଁ ।

ଚୋଡଗଙ୍ଗ ଏହି ବୃହତ୍ ମନ୍ଦିର ନିର୍ମାଣ କରାଇଥିବା ସଂପର୍କରେ ଜନଶ୍ରୁତି ନଥିବାର କାରଣ ଏ ପ୍ରସଂଗରେ ଦର୍ଶାଇ ଦିଆଯାଇପାରେ । ପ୍ରାଚୀ ସମିତି ପ୍ରକାଶିତ ମାଦଳାପାଞ୍ଜିର ରାଜଭୋଗ ଚରିତରେ ବର୍ଣ୍ଣନା କରାଯାଇଛି ଯେ ଚୋଡଗଙ୍ଗ ନାଟବେଶରେ ଆସି ଓଡିଶା ଅଧିକାର କଲେ ଓ ସେ ଭୁବନେଶ୍ୱର-ଶିବଙ୍କ ଆଜ୍ଞାରେ ଓଡ଼ିଶାରେ ରାଜାହେଲେ । ଏହି ପ୍ରସଂଗଟି ମଧ୍ୟ କଟକ ରାଜବଂଶାବଳୀ ଓ ଓଡ୍ରରାଜବଂଶାବଳୀରେ ସ୍ଥାନ ପାଇଛି । କିନ୍ତୁ ଗଙ୍ଗବଂଶାନୁ-ଚରିତ ଚଂପୂରେ ବର୍ଣ୍ଣନା କରାଯାଇଛି ଯେ ଚୋଡଗଙ୍ଗ ନାନା କୌଶଳ ଅବଲମ୍ବନ କରି ଉତ୍କଳ ସିଂହାସନ ଗ୍ରହଣ କରିଥିଲେ ।

ଏ ସମସ୍ତ ବିବରଣୀକୁ ଗ୍ରହଣ କରି ଡକ୍ଟର ଗଗନେନ୍ଦ୍ର ନାଥ ଦାଶ ପ୍ରକାଶ କରିଥିଲେ ଯେ ଚୋଡଗଙ୍ଗଙ୍କ ଉତ୍କଳ ବିଜୟରେ ଶୈବମାନଙ୍କର ସକ୍ରିୟ ସମର୍ଥନ ଥିଲା[34] । ଜନଶ୍ରୁତିର ଐତିହାସିକ ଦିଗକୁ ଉପେକ୍ଷା କରାଯାଇ ନପାରେ । ଯେଉଁ ରାଜଭୋଗ ଚରିତର ଲେଖକ ଚୋଡଗଙ୍ଗ ନାଟ ବେଶରେ ଆସି କଟକ ମାଡ଼ିବସି ରାଜାହେଲେ ଓ ସେ

---

34- ଜନଶ୍ରୁତି କାଞ୍ଚିକାବେରୀ, ୧୯୭୯, ପୃ-୪୬ ।
CJRTO, Chapter IX, 1978, p. 160-161.

ରାଜାହେବା କଥା ଭୁବନେଶ୍ୱର ଶିବଙ୍କର ନିର୍ଦ୍ଦେଶ ବୋଲି ବର୍ଣ୍ଣନା କରେ ସେ କିପରି ତାଙ୍କୁ ବିଷ୍ଣୁ ପୁରୁଷୋତ୍ତମଙ୍କ ପାଇଁ ବୃହତ୍ ମନ୍ଦିର କରିବା କଥାକୁ ପ୍ରକାଶ କରିବେ ? ଏହା ମୂଳ ବକ୍ତବ୍ୟକୁ ବିରୋଧ କରିବ । ଚୋଡ଼ଗଙ୍ଗ ଉତ୍କଳ ବିଜୟ କାଳରେ ଶୈବମାନେ ଯେ ଭୁବନେଶ୍ୱର ଶିବଙ୍କ ଆଜ୍ଞାରେ ଓଡ଼ିଶାର ରାଜାହେବେ ବୋଲି ଯେଉଁ ପ୍ରଚାର କରିଗଲେ, ତାହାକୁ ଖଣ୍ଡନକରି ପୁରୁଷୋତ୍ତମ ମନ୍ଦିର ନିର୍ମାଣ କାଳରେ ବୈଷ୍ଣବମାନେ ସେ ମନ୍ଦିର ତିଆରି କରାଇଥିବାର ପ୍ରଚାର କରିପାରିନଥିଲେ । ଫଳରେ ପୁରୁଷୋତ୍ତମ କ୍ଷେତ୍ରରେ ସେ ମନ୍ଦିର ନିର୍ମାଣ କରାଇଥିବାର ଜନଶ୍ରୁତି ମଧ୍ୟଯୁଗୀୟ ଓଡ଼ିଶାରେ ନଥିଲା । ଏହାର କାରଣ ବୈଷ୍ଣବମାନଙ୍କର ଧର୍ମ କ୍ଷେତ୍ରରେ ବିଶେଷ ପ୍ରଭାବ ନଥିଲା ଓ ସେତେବେଳେ ଭୁବନେଶ୍ୱର-ଶୈବମାନେ ବିଶେଷ କ୍ଷମତାଶାଳୀ ଥିଲେ । ସେମାନଙ୍କର ପ୍ରଚାର ସର୍ବତ୍ର ଗୃହୀତ ହୋଇଥିଲା । ଏଣୁ ଓଡ଼ିଶାରେ ଚୋଡ଼ଗଙ୍ଗ ପୁରୁଷୋତ୍ତମ କ୍ଷେତ୍ରକୁ ଯାଇଥିବାର ଜନଶ୍ରୁତି ଥିଲେ ମଧ୍ୟ ସେ ପୁରୁଷୋତ୍ତମ-ଜଗନ୍ନାଥଙ୍କ ପାଇଁ ବୃହତ୍ ମନ୍ଦିର ନିର୍ମାଣ କରାଇଥିବାର ଜନଶ୍ରୁତି ନଥିଲା । ଏ ସଂପର୍କରେ ଜନଶ୍ରୁତିଥିଲେ ତାହାକୁ ଭିତ୍ତି କରି ଉପରଲିଖିତ ସାହିତ୍ୟିକ ଗ୍ରନ୍ଥମାନଙ୍କରେ ଚୋଡ଼ଗଙ୍ଗଙ୍କୁ ନିଶ୍ଚିତ ଭାବରେ ଏହି ମନ୍ଦିରର ନିର୍ମାତା ବୋଲି ବର୍ଣ୍ଣନା କରାଯାଇଥାଆନ୍ତା ।

ତେବେ ଏ ସଂପର୍କରେ ଦୁଇଟି ସାହିତ୍ୟିକ ଉପାଦାନରେ ବର୍ଣ୍ଣନାରହିଛି ।

(୧) ମାଧବ ପଟ୍ଟନାୟକଙ୍କ ରଚିତ ବୈଷ୍ଣବ ଲୀଳାମୃତ ନାମକ ଏକ ତାଳପତ୍ର ପୋଥିରେ ଚୋଡ଼ଗଙ୍ଗଙ୍କୁ ମନ୍ଦିର ନିର୍ମାତା ବୋଲି ପ୍ରକାଶ କରାଯାଇଛି । ଏହାର ରଚନାକାଳ ୧୫୪୦ ଖ୍ରୀଷ୍ଟାବ୍ଦ । ସମ୍ବଲପୁର ବିଶ୍ୱବିଦ୍ୟାଳୟର ଓଡ଼ିଆ ବିଭାଗର ମୁଖ୍ୟ ଅଧ୍ୟାପକ ଡକ୍ଟର ବୃନ୍ଦାବନ ଆଚାର୍ଯ୍ୟ ଏହି ପୋଥି ସଂଗ୍ରହ କରିଥିଲେ । ସେ ସଂପର୍କରେ କିଛି ପ୍ରବନ୍ଧ ମଧ୍ୟ ସେ ମହାଶୟ ପ୍ରକାଶ କରିଛନ୍ତି ।

(୨) ଶ୍ରୀମନ୍ଦିର ସମାଚାରରେ ପ୍ରକାଶିତ ଅନ୍ୟଏକ ମାଦଳାପାଞ୍ଜିରେ ଏହି ପ୍ରସଙ୍ଗ ସ୍ଥାନ ପାଇଛି ।

ଏହି ଦୁଇଟି ଉପାଦାନରେ କିପରି ଚୋଡ଼ଗଙ୍ଗଙ୍କୁ ମନ୍ଦିର ନିର୍ମାତା ବୋଲି ବର୍ଣ୍ଣନା କରାଗଲା (ଯାହା ଅନ୍ୟାନ୍ୟ ସାହିତ୍ୟିକ ଉପାଦାନରେ ସ୍ଥାନ ପାଇନଥିଲା) ସେ ସଂପର୍କରେ ଅଲୋଚନା କରାଯିବା ଉଚିତ । କିନ୍ତୁ ପ୍ରଥମ ଗ୍ରନ୍ଥଟିରେ ଐତିହାସିକ ତଥ୍ୟ ଭରିରହିଛି । ମଧ୍ୟଯୁଗୀୟ ଓଡ଼ିଶାରେ ଯାହା କୌଣସି କବି ବା ଲେଖକଙ୍କ ଦୃଷ୍ଟିକୁ ଆସିନଥିଲା, ସେ ସଂପର୍କରେ ମାଧବ ପଟ୍ଟନାୟକ ବିସ୍ତାରିତ ଆଲୋଚନା କରିଛନ୍ତି । ସେ ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ମନେ ହେଉଥିବା ଏହି ପୋଥିର ଐତିହାସିକ ତଥା ଭାଷାତାତ୍ତ୍ୱିକ ଦୃଷ୍ଟିରୁ ମୂଲ୍ୟାୟନ କରାଯିବା ଉଚିତ । ଏ ଦୁଇଟି ଗୁରୁତ୍ୱପୂର୍ଣ୍ଣ ଉପାଦାନକୁ ବାଦ୍ ଦେଲେ ଅନ୍ୟାନ୍ୟ ଅଧିକାଂଶ ସାହିତ୍ୟିକ ଉପାଦାନରେ ଚୋଡଗଙ୍ଗ ମନ୍ଦିର ନିର୍ମାଣ କରିଥିବା କଥାର ଉଲ୍ଲେଖ ନାହିଁ । ଚୋଡଗଙ୍ଗ ବୃହତ ପୁରୁଷୋତ୍ତମ ମନ୍ଦିର ନିର୍ମାଣ କରିଛନ୍ତି, ଏହା ସତ୍ୟ । କିନ୍ତୁ ଓଡ଼ିଶାରେ ସେ ମନ୍ଦିର ନିର୍ମାଣ କରାଇଥିବା ପ୍ରସଙ୍ଗ ବହନ କରିଥିବା ସିଧାସଳଖ ପରଂପରା ଏ ପର୍ଯ୍ୟନ୍ତ ଆମ ଦୃଷ୍ଟିକୁ ଆସିନାହିଁ ।

ଇତିହାସ ଅଧ୍ୟାପକ
ରାଉରକେଲା ସାନ୍ଧ୍ୟ କଲେଜ
ରାଉରକେଲା - ୨

# ଶ୍ରୀଜଗନ୍ନାଥ ସଂସ୍କୃତିର ବୈଶିଷ୍ଟ୍ୟ

ଶ୍ରୀ ପଙ୍କଜ ସାହୁ

ପୁଣ୍ୟଭୂମି ଭାରତବର୍ଷ ଧର୍ମ ଦର୍ଶନର ଦେଶ । ଯେଉଁ କ୍ଷେତ୍ରରେ ପରଂବ୍ରହ୍ମ ସ୍ୱୟଂ ଲୀଳାଖେଳା କରନ୍ତି ତାହା ଧାମ ପଦବାଚ୍ୟ । ଧର୍ମ-ଅର୍ଥ କାମ-ମୋକ୍ଷ ପ୍ରଭୃତି ସାଧନ ନିମିତ୍ତ ତୀର୍ଥାଟନର ମୂଳସୂତ୍ର ରୂପେ ଭାରତର ଚତୁର୍ଦ୍ଦିଗରେ ଚାରିଧାମ ପ୍ରତିଷ୍ଠାଲାଭ କରିଅଛି । ଯୋଗ-ଜ୍ଞାନ-କର୍ମ-ଭକ୍ତିର ପ୍ରତୀକ ରୂପେ ଏହି ଧାମ ଚତୁଷ୍ଟୟ ଭାରତୀୟ ସାଂସ୍କୃତିକ ଐକ୍ୟର ମହାନ ପୀଠ ।

"କୃତେ ଚ ବଦ୍ରିନାଥ ସ୍ଚ ତ୍ରେତାୟାଂ ସେତୁ ଶଙ୍କରମ୍
ଦ୍ୱାପରେ ଦ୍ୱାରକାନାଥଂ କଲୌ ଶ୍ରୀପୁରୁଷୋତ୍ତମମ୍ ।।"

ସତ୍ୟଯୁଗରେ ହିମାଳୟରେ ବାମନ ତପସ୍ୟାଚରଣ କରିବା ଫଳରେ ବଦ୍ରିନାରାୟଣ ଧାମ ଉନ୍ମୋଚିତ ହୋଇଥିଲା । ତ୍ରେତୟାଯୁଗରେ ମର୍ଯ୍ୟାଦା ପୁରୁଷୋତ୍ତମ ଶ୍ରୀରାମଚନ୍ଦ୍ରଙ୍କ ଦ୍ୱାରା ରାମେଶ୍ୱର ନାମକ ସ୍ଥାନରେ ରାମନାଥ ଧାମ ପ୍ରକଟିତ ହୋଇଥିଲା । ତଦନନ୍ତର ଦ୍ୱାପର ଯୁଗରେ ମୂଳଦ୍ୱାରକାରେ ଭଗବାନ ଶ୍ରୀକୃଷ୍ଣଚନ୍ଦ୍ରଙ୍କ ରାଜ୍ୟାଭିଷେକ ନିମିତ୍ତ ଉଦ୍ଦିଷ୍ଟ ଦ୍ୱାରକାଧାମ ପ୍ରସିଦ୍ଧ । ସର୍ବୋପରି କଳିଯୁଗରେ ପରଂବ୍ରହ୍ମଙ୍କର ଅପୁରୁଷେୟବାଦର ପ୍ରତ୍ୟକ୍ଷ ସ୍ମାରକୀ ବହନ କରି ଶ୍ରୀକ୍ଷେତ୍ରରେ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଧାମର ଉପଲବ୍ଧି ବାସ୍ତବରେ ଉଲ୍ଲେଖନୀୟ । କେଉଁ ସ୍ମରଣାତୀତ କାଳରୁ ପରମବିଷ୍ଣୁ ବଦ୍ରିନାରାୟଣରେ ସ୍ନାନକରି, ଦ୍ୱାରକାରେ ବେଶ ବିମଣ୍ଡିତ ହୋଇ, ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ମହାପ୍ରସାଦ ମଣୋହି କରି ରାମେଶ୍ୱରରେ ବିଶ୍ରାମ କରିବା ବିଶ୍ୱାସ ଆଜିବି ଜନମାନସରେ ଉଜ୍ଜୀବିତ ରହିଅଛି । ଜଗତଗୁରୁ ଶଙ୍କରାଚାର୍ଯ୍ୟ ଉକ୍ତ ଚତୁର୍ଦ୍ଧାମ ଯଥା—ବଦ୍ରିକା, ଦ୍ୱାରକା, ଶୃଙ୍ଗେରୀ ଓ ଶ୍ରୀକ୍ଷେତ୍ରକୁ ଯଥାକ୍ରମେ ତ୍ୟାଗକ୍ଷେତ୍ର, ଐଶ୍ୱର୍ଯ୍ୟକ୍ଷେତ୍ର, କର୍ମକ୍ଷେତ୍ର ଓ ଭୋଗକ୍ଷେତ୍ର ରୂପେ ପ୍ରାଧାନ୍ୟ ଦେଇଅଛନ୍ତି । ଭାରତବର୍ଷରେ ପ୍ରୋକ୍ତ ପୁଣ୍ୟକ୍ଷେତ୍ରମାନଙ୍କର ସୁଷ୍ଠୁ ପରିକଳ୍ପନା ଦେଖି ପାଶ୍ଚାତ୍ୟ ମନିଷୀ ମାର୍ଟିନ୍ ଲୁଥର

କିଙ୍ଗ କହିଛନ୍ତି—"To other countries I may go as a tourist, but to India as a pilgrim." ଯୁଗଧାମ ନାମରେ ଖ୍ୟାତ ଉକ୍ତ ଧାମ ଚତୁଷ୍ଟୟ ମଧ୍ୟରେ ଶ୍ରୀକ୍ଷେତ୍ର ଶ୍ରୀଧାମ ନାମରେ ବିଶ୍ୱ ବିଶ୍ରୁତ । ବ୍ରହ୍ମା ସ୍ଥାପିତ ଏହି ଶ୍ରୀଧାମ ପାବନ କ୍ଷେତ୍ରରେ ମୋକ୍ଷ ପ୍ରାପ୍ତି ପାଇଁ ପୁରୁଷୋତ୍ତମ ତତ୍ତ୍ୱ ପ୍ରତିଷ୍ଠାଲାଭ କରିଅଛି । ଏହି ପରିପ୍ରେକ୍ଷୀରେ ଯଥାର୍ଥରେ କୁହାଯାଇଛି—

"ପ୍ରାଚ୍ୟାଦେବ ଜଗନ୍ନାଥଃ ଭକ୍ତି ମୋକ୍ଷ ପ୍ରଦାୟକମ୍
ଚତୁର୍ଦ୍ଧାମ ପରଂ ପୁଣ୍ୟଂ ସାକ୍ଷାତ ବ୍ରହ୍ମଣା ସ୍ଥାପିତମ୍
ଯସ୍ୟ ଦର୍ଶନ ମାତ୍ରେଣ ନରଃ ପୁଚେଚ୍ଛିଳ ବିଷାତ୍ ॥"

ଶ୍ରୀକ୍ଷେତ୍ର ନୀଳାଚଳ ହିଁ ନିତ୍ୟଗୋଲକ । ମର୍ତ୍ତ୍ୟ ବୃନ୍ଦାବନର ଲୀଳା ସକାମ ହେତୁ ତାହା ଐଶ୍ୱର୍ଯ୍ୟାଶ୍ରିତ । ମାତ୍ର ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥଙ୍କ ଲୀଳା ନିଷ୍କାମ ହେତୁ ଏହା ମାଧୁର୍ଯ୍ୟାଶ୍ରିତ ଅଟେ । ଚିନ୍ମୟ ଓ ଅପ୍ରାକୃତ କ୍ଷେତ୍ର ଶ୍ରୀକ୍ଷେତ୍ର ଶ୍ରୀଜଗନ୍ନାଥଙ୍କ ନିଜଧାମ ତଥା ଦିବ୍ୟଧାମ । ଉକ୍ତ ଶାଶ୍ୱତ କ୍ଷେତ୍ର ନୀଳାଚଳ ଶ୍ରୀଜଗନ୍ନାଥଙ୍କ ନିତ୍ୟ ଲୀଳାକ୍ଷେତ୍ର । "ଜଳେ ଦ୍ୱାରକା ନାଶ ଯିବ । ମାତ୍ର ନିବାସ ମୋର ଥିବ ॥" ଉକ୍ତିଟିରେ ଶ୍ରୀକ୍ଷେତ୍ରର ଚିରନ୍ତନତା ସ୍ୱୀକୃତ ହୋଇଅଛି । ହିନ୍ଦୁ ସଂସ୍କୃତି ଅନୁଯାୟୀ ବଦ୍ରି, ଦ୍ୱାରକା ଓ ରାମେଶ୍ୱର ଧାମ ଦର୍ଶନ କରିବା ପରେ ସର୍ବଶେଷରେ ତୀର୍ଥଯାତ୍ରୀ ପୁରୀ ଧାମରେ ଶ୍ରୀଜଗନ୍ନାଥ ଦର୍ଶନ କରିବା ବିଧେୟ । ହିନ୍ଦୁର ବିଶ୍ୱାସ ଅନୁସାରେ ମୁମୁକ୍ଷୁ ଭକ୍ତ ଭାରତର ଯେତେ ତୀର୍ଥ ପର୍ଯ୍ୟଟନ କରନ୍ତୁ ନା କାହିଁକି, ଶ୍ରୀକ୍ଷେତ୍ରରେ ଶ୍ରୀଜଗନ୍ନାଥ ଦର୍ଶନ ବିନା ତାର ସମସ୍ତ ଅଭିଳାଷ ଅପୂର୍ଣ୍ଣ ରହିଯାଏ । ତ୍ୟାଗ-ପ୍ରେମ-ଅହିଂସାର ପରମକ୍ଷେତ୍ର ଏହି ଶ୍ରୀକ୍ଷେତ୍ର ନିଖିଳ ମାନବ ମନରେ ଶାନ୍ତି, ମୈତ୍ରୀ ଓ ପ୍ରଗତିର ଅପୂର୍ବ ଭାବଧାରା ସୃଷ୍ଟି କରିଥାଏ । କେବଳ ଶ୍ରୀଜଗନ୍ନାଥଙ୍କ ଅବସ୍ଥାନ ଯୋଗୁଁ ଏହି ପବିତ୍ର କ୍ଷେତ୍ରର ବୈଶିଷ୍ଟ୍ୟ ଯେ ବୃଦ୍ଧିପ୍ରାପ୍ତ ହୋଇଅଛି ଏହା ନିଃସନ୍ଦେହ । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥ ସଂସ୍କୃତିର ମହନୀୟତା ଆଜି କାହିଁକି ବିଶ୍ୱମନୀଷାର ଦୃଷ୍ଟି ଆକର୍ଷଣ କରିଅଛି, ତାହାହିଁ ବିଚାର୍ଯ୍ୟ ।

ତୀର୍ଥରାଜ ମହୋଦଧି ବେଳା ସଂଲଗ୍ନ କ୍ଷେତ୍ରରାଜ ପୁରୁଷୋତ୍ତମରେ ଦେବରାଜ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ବିରାଜିତ ଥିବାରୁ ଉକ୍ତ ଶ୍ରୀପୁରୁଷୋତ୍ତମ କ୍ଷେତ୍ର ପୃଥିବୀର ଶ୍ରେଷ୍ଠତମ କ୍ଷେତ୍ର ରୂପେ ପ୍ରସିଦ୍ଧ । "କ୍ଷେତ୍ର ନୀଳାଚଳଂ ପୁଣ୍ୟ

ଦାରୁବ୍ରହ୍ମ ସ୍ୱରୂପିଣଃ'' (କପିଳ ସଂହିତା) । ପୁଣ୍ୟ ନୀଳାଚଳ କ୍ଷେତ୍ର ଦାରୁବ୍ରହ୍ମ ଶ୍ରୀଜଗନ୍ନାଥଙ୍କ ଶରୀର ସଦୃଶ ଅଟେ । କ୍ଷେତ୍ର ଓ କ୍ଷେତ୍ରଜ୍ଞ ମଧ୍ୟରେ ଏତାଦୃଶ ଏକାତ୍ମଭବ ଶ୍ରୀଜଗନ୍ନାଥ ଧାମ ବ୍ୟତୀତ ଅନ୍ୟ କୁତ୍ରାପି ପରିଦୃଷ୍ଟ ହୁଏ ନାହିଁ । ଭାରତରେ ଅଗଣିତ ଦେବଦେବୀ ଉପାସିତ ହେଉଥିଲେ ହେଁ ଶ୍ରୀଜଗନ୍ନାଥ ଉପାସନା ପ୍ରାଧାନ୍ୟ ଲାଭ କରିଅଛି । ନିଜ ନାମର ସାର୍ଥକତା ପ୍ରତିପାଦନ କରି ସେ କେବଳ ପୁରୀନାଥ କିମ୍ବା ଉତ୍କଳନାଥ ଅଥବା ଭାରତନାଥ ନୁହନ୍ତି । ସେ ସମଗ୍ର ଜଗତରନାଥ ହିସାବରେ ଶ୍ରୀଜଗନ୍ନାଥ ନାମକରଣରେ ହିଁ ତାଙ୍କର ବୈଶିଷ୍ଟ୍ୟ ନିହିତ । ଜଗତ ଓ ଜଗନ୍ନାଥ ଅଭିନ୍ନ । ଜଗତ ତାଙ୍କର ସେ ଜଗତର । ସେ ଜଗତନାଥ ହେତୁ ସତ୍ତା ତାଙ୍କର ଜଗନ୍ମୟ । ଶ୍ରୀଜଗନ୍ନାଥ ନାମ ତାଙ୍କର ବିଶ୍ୱ ପ୍ରଭୁତ୍ୱର ଦ୍ୟୋତନା ସୃଷ୍ଟି କରିଥାଏ । ଯଃଗତ; ଯଃସ୍ଥିତ ଓ ଯଃ ଆୟାତ ଏହି ତ୍ରିକାଳ ନାଥ ହିଁ ଶ୍ରୀଜଗନ୍ନାଥ । ଅର୍ଥାତ୍ ଏହି ଶ୍ରୀଜଗନ୍ନାଥ କେଉଁ ସୁଦୂର ଅତୀତରୁ କିମ୍ବଦନ୍ତୀର ଦେବତା ରୂପେ ଆବିର୍ଭୂତ ହୋଇ ଆଧୁନିକ ସଭ୍ୟମାନବର ବୌଦ୍ଧିକତା ସ୍ତରରେ ପ୍ରତିଷ୍ଠା ଲାଭକରି ଭବିଷ୍ୟତ ମାନବ ସମାଜ ପାଇଁ ଉପଯୁକ୍ତ ଦିଗଦର୍ଶନ ଦେଇ ଆସୁଛନ୍ତି । ଅତଏବ ଏତଦ୍ୱାରା ଶ୍ରୀଜଗନ୍ନାଥ ସଂସ୍କୃତିର ମୃତ୍ୟୁଞ୍ଜୟତା ହିଁ ପ୍ରତିପାଦିତ ହୋଇଅଛି ।

ବିଗ୍ରହ ନିର୍ମାଣ ଉପାଦାନରେ ଦାରୁଦେବତାଙ୍କ ସ୍ୱାତନ୍ତ୍ର୍ୟ ଅନନ୍ୟ । କାରଣ ସାକାରବାଦୀମାନେ ମୃତ୍ତିକା, ପ୍ରସ୍ତର, ସ୍ୱର୍ଣ୍ଣ ଓ ରୌପ୍ୟ ପ୍ରଭୃତି ମୂଲ୍ୟବାନ ଧାତବ ମୂର୍ତ୍ତି ସହିତ ବିଶ୍ୱାସ ଅନୁସାରେ ଶ୍ରୀଶାଳଗ୍ରାମ, ବାଣଲିଙ୍ଗ, ଗୋବର୍ଦ୍ଧନ ଗିରିର ଶିଳାଖଣ୍ଡ, ଉଇହୁଙ୍କା, ନାରିକେଳ, ଗୁବାକ, କୁଶନିର୍ମିତ ବିଷ୍ଟର ଓ କଳସାଦି ପ୍ରତୀକ ପୂଜା କରିବା ସଙ୍ଗେ ସଙ୍ଗେ ବିଭିନ୍ନ ଜୀବଜନ୍ତୁ ତଥା ଜଳ-ବାୟୁ-ଅଗ୍ନି-ସୂର୍ଯ୍ୟ-ଚନ୍ଦ୍ର ପ୍ରଭୃତି ପ୍ରାକୃତିକ ଉପାଦାନ ଗୁଡିକୁ ଯଥାବିଧି ପୂଜାକରି ଆସୁଛନ୍ତି । ଉପାସନା ପଦ୍ଧତିରେ ପାର୍ଥକ୍ୟ ପରିଦୃଷ୍ଟ ହେଉଥିଲେ ହେଁ, କେବଳ ବିଶ୍ୱାସ ଯେ ଏହିସବୁ ଉପାସନାର ନିର୍ଯ୍ୟାସ; ଏହା ଅନସ୍ୱୀକାର୍ଯ୍ୟ । ଏ ସମସ୍ତ ମଧ୍ୟରେ ବୃକ୍ଷପୂଜା ବା ଦାରୁ ଉପାସନା ସର୍ବପ୍ରଧାନ ତଥା ସର୍ବପ୍ରାଚୀନ ଅଟେ । ବୃକ୍ଷପୂଜା ପୃଥିବୀର ଉପାସନା ପରମ୍ପରାରେ ଏକ ଅନ୍ତଃଦୃଷ୍ଟିମୟ ଦର୍ଶନ ଉପରେ ପର୍ଯ୍ୟବେସିତ । ବୃକ୍ଷ ପ୍ରକୃତିର ସକଳ ତାଡ଼ନାକୁ ପ୍ରତିହତ କରି ସ୍ୱାଧୀନ ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ସ୍ୱୀୟ ଅଭିବୃଦ୍ଧି ଅବ୍ୟାହତ ରଖିଥାଏ । ପୁନଶ୍ଚ ଉଦ୍ଭିଦଜଗତ ମାନବ ସମାଜକୁ ଶ୍ୱାସକ୍ରିୟା ନିମିତ୍ତ ଅମ୍ଳଜାନ, କ୍ଷୁଧା ନିବାରଣ ନିମିତ୍ତ ଖାଦ୍ୟ, ପରିଧାନ ନିମିତ୍ତ ବସ୍ତ୍ର, ରୋଗ ଦୂରୀକରଣ ନିମିତ୍ତ ଔଷଧ, ଗୃହୋପକରଣ ପ୍ରସ୍ତୁତି

ନିମିତ୍ତ କାଷ୍ଠ, ରନ୍ଧନ ନିମିତ୍ତ ଇନ୍ଧନ ଯୋଗାଇବା ସଙ୍ଗେ ସଙ୍ଗେ ପୃଥିବୀରେ ବୃଷ୍ଟିପାଇଁ ଉପଯୁକ୍ତ ବାତାବରଣ ସୃଷ୍ଟି କରିଥାଏ । ସହନଶୀଳତା ବୃକ୍ଷର ଏକ ମହାନ ପ୍ରବୃତ୍ତି । ସର୍ବୋପରି ପ୍ରାଣୀ ନିଜର ପ୍ରାଣରକ୍ଷା ନିମିତ୍ତ ସର୍ବତୋଭାବେ ବୃକ୍ଷଉପରେ ନିର୍ଭର କରୁଥିବାରୁ ମାନବ ସର୍ବପ୍ରଥମେ ବୃକ୍ଷପୂଜା କରିଥିବା ସମୀଚୀନ । ଏତଦ୍‌ବ୍ୟତୀତ ବୃକ୍ଷପୂଜା ଦ୍ୱାରା ଆୟୁ, ବଳ, ଯଶ ବୃଦ୍ଧିପ୍ରାପ୍ତ ହୋଇଥାଏ ବୋଲି ପୌରାଣିକ ପ୍ରସିଦ୍ଧି ରହିଅଛି । ବୃକ୍ଷପୂଜା କ୍ରମବିବର୍ତ୍ତନ ମଧ୍ୟଦେଇ ଗତିକରି ପରିଶେଷରେ ଦାରୁ ଉପାସନାରେ ରୂପାନ୍ତରିତ ହୋଇଅଛି । "ଜନ୍ମଜନ୍ମାନ୍ତର ପାତକାନି ଦାରୟତି ଇତି ଦାରୁଃ"—ପାପ ଦୂରୀକରଣ କ୍ଷମତା ଥିବାରୁ ତାହା ଦାରୁ । ହିନ୍ଦୁ ଜଗତରେ ଅନେକ ଦେବଦେବୀ ଉପାସିତ ହେଉଥିଲେ ମଧ୍ୟ କେବଳ ଶ୍ରୀଜଗନ୍ନାଥ ଦାରୁ ଉପାସନାକୁ ସ୍ୱୀକୃତି ତଥା ସମ୍ମାନ ଦେଇ ଦାରୁଦେବତା ରୂପେ ଉପାସିତ ହୋଇ ଆସୁଛନ୍ତି । ଅନେକ ବିବର୍ତ୍ତନ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ଦାରବ ବିଗ୍ରହର ମୌଳିକତା ଅଦ୍ୟାବଧି ଅକ୍ଷୁର୍ଣ୍ଣ ରହିଅଛି ।

ଶ୍ରୀଜଗନ୍ନାଥ ବିଶ୍ୱର ଏକମାତ୍ର ରହସ୍ୟମୟ ଦେବତା । ଏହି ପ୍ରସଙ୍ଗରେ 'କପିଳ ସଂହିତା'ରେ ବର୍ଣ୍ଣିତ ଅଛି ଯେ—"ସର୍ବ ରହସ୍ୟଂ ପୁରୁଷୋତ୍ତମସ୍ୟ ଦେବେ ନ ଜାନାନ୍ତି କୁତଃ ମନୁଷ୍ୟାଃ ।" ସେହି ପରମ କାରୁଣିକ ଶ୍ରୀଜଗନ୍ନାଥଙ୍କ ରହସ୍ୟ "ଦେବେ ମାନବେ ଅଗୋଚର ।" ଶ୍ରୀଜଗନ୍ନାଥ କେବଳ ଶ୍ରୀକ୍ଷେତ୍ରର ନୁହନ୍ତି, ସମଗ୍ର ଜାଗତିକ ରହସ୍ୟର ଏକ ଅନିର୍ବାଣ ଅଭିବ୍ୟକ୍ତି । କାଳର କେଉଁ ଅନାବିଷ୍କୃତ ମୁହୂର୍ତ୍ତରେ ବିଶ୍ୱବିସ୍ମୟର ଏହି ଅନୁପମ ପ୍ରତୀକ ଦାରବ ରୂପ ପରିଗ୍ରହ କଲେ ତାହା ଅଦ୍ୟାବଧି ଅନୁଦ୍‌ଘାଟିତ ହୋଇ ରହିଅଛି । ମନୁଷ୍ୟର ଅନୁମାନ ଅନ୍ୱେଷା, କିମ୍ବଦନ୍ତୀ-ପୁରାଣ, ଲୋକନାଥ ଓ ଇତିହାସର ଅନୁଶାସନ ପର୍ଦ୍ଦାରୁ ରହସ୍ୟମୟ ଶ୍ରୀଜଗନ୍ନାଥଙ୍କ ଆବିର୍ଭାବ । ତାଙ୍କର ସୃଷ୍ଟି ରହସ୍ୟ ଆବିଷ୍କାର ପାଇଁ ଆଜି ମଧ୍ୟ ଗବେଷକ ମାନଙ୍କର ବିନିଦ୍ର ଗବେଷଣାର ବିରାମ ନାହିଁ । ରହସ୍ୟ ଉଦ୍‌ଘାଟନ ପାଇଁ ମନୁଷ୍ୟ କୌତୁହଳୀ ହେବା ମନସ୍ତାତ୍ତ୍ୱିକ ଦୃଷ୍ଟିରୁ ସମୀଚୀନ । ମନୁଷ୍ୟର ଅନ୍ୱେଷା ଅପରିସୀମ । ସେହି ଅନ୍ୱେଷାରୁ ନୂତନ ଚେତନା ସମ୍ବନ୍ଧରେ ସମ୍ୟକ୍ ସୂଚନା ମିଳିଥାଏ । ଯେହି ରହସ୍ୟମୟ ଚେତନାରେ ବୈଚିତ୍ର୍ୟପୂର୍ଣ୍ଣ ଅନୁଭୂତିର ସ୍ପର୍ଶ ମିଳେ । ଶ୍ରୀଜଗନ୍ନାଥଙ୍କ ସୃଷ୍ଟି ରହସ୍ୟ କିନ୍ତୁ ଯୁଗେ ଯୁଗେ ମନୁଷ୍ୟର ଚେତନା ବଳୟକୁ ବିଶ୍ୱାସର ଆଲୋକରଶ୍ମିରେ ଉଦ୍ଭାସିତ କରିଆସିଛି । ମନୁଷ୍ୟ ତାର ଜ୍ଞାନ ଭିତର ଦେଇ ଶ୍ରୀଜଗନ୍ନାଥଙ୍କୁ ଚିହ୍ନିବା ପାଇଁ

ଯେଉଁଭଳି ଚେଷ୍ଟା କରିଆସିଛି, ଭକ୍ତି ଓ ବିଶ୍ୱାସ ମଧ୍ୟଦେଇ ଉପଲବ୍ଧି କରିବାକୁ ସେହିପରି ନିରବଚ୍ଛିନ୍ନ ପ୍ରୟାସ କରିଆସିଛି ମଧ୍ୟ । ଅନୁଭୂତିର ସିଂହଦ୍ୱାର ଦେଇ ଯୁଗଯୁଗଧରି ବ୍ୟକ୍ତିମାନଙ୍କ ବାଇଶି ପାହାଚ ଅତିକ୍ରମ କଲାପରେ ଆଧ୍ୟାତ୍ମିକ ରତ୍ନସିଂହାସନାସୀନ ଶ୍ରୀଜଗନ୍ନାଥ ତାଙ୍କ ଦୃଷ୍ଟି ପଥାରୂଢ଼ ହୋଇଛନ୍ତି । ସମୟ ସର୍ବଦା ପରିବର୍ତ୍ତନଶୀଳ । ସମୟର ପ୍ରଭାବରେ ପରିଚିତ କ୍ରମଶଃ ବିସ୍ମୃତି ଗର୍ଭରେ ଲୀନ ହୋଇଯାଏ । ପୁନଶ୍ଚ ଅପରିଚିତ ତାର ପରିଚୟହୀନତାର ଆବରଣ ପରିତ୍ୟାଗ କରି ହୋଇଉଠେ ପରିଚିତ । ଏହା ହିଁ ସମୟର ଧର୍ମ । ପୁରାତନର କବର ଉପରେ ଅନେକ ନୂତନ ସୃଷ୍ଟି ଆତ୍ମପ୍ରକାଶ କରେ ଯେତେବେଳେ ଅତୀତଗୁଡ଼ିକରୁ ବର୍ତ୍ତମାନ ଜନ୍ମନିଏ । ସେହିପରି ଭବିଷ୍ୟତ ଗୁଡ଼ିକ କ୍ରମଶଃ ବର୍ତ୍ତମାନ ପାଲଟି ଗଲାବେଳେ ରହସ୍ୟ ଉଦ୍‌ଘାଟନ ସହଜ ହୋଇଉଠେ । ସମୟର ଏହି ବିବର୍ତ୍ତନ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ସୃଷ୍ଟି ରହସ୍ୟ କେବଳ ଅପରିବର୍ତ୍ତିତ ରହିଛି । ସେଥିପାଇଁ ଶ୍ରୀଜଗନ୍ନାଥ ମାନବୀୟ ଚିନ୍ତା-ଚିନ୍ତନ ମଧ୍ୟରେ ଚିର ରହସ୍ୟମୟ ହୋଇ ରହିଯାଇଛନ୍ତି । ଏକ ଅସୀମ ଅନନ୍ତ ସତ୍ତାର ପ୍ରତୀକ ଶ୍ରୀଜଗନ୍ନାଥଙ୍କର ସୃଷ୍ଟି, ସ୍ଥିତି ଓ ଉପାସନା ସମ୍ବନ୍ଧରେ ଏକ ସ୍ଥିର ନିଶ୍ଚିତ ବିବରଣୀ ପ୍ରଦାନ କରିବା ଅଦ୍ୟାବଧି ମଣିଷର ଜ୍ଞାନାନୁସନ୍ଧିତ୍ସୁ ମନର ପରିଧି ମଧ୍ୟରେ ହିଁ ସୀମାବଦ୍ଧ ରହିଅଛି । ସର୍ବୋପରି ମଣିଷ ନିଜ ହାତଗଣ୍ଠା ଦିଅଁ ପାଖରେ ନିତି ପ୍ରଣତି ଜଣାଏ ସତ, ମାତ୍ର ଯେତେବେଳେ ଏହି ମଣିଷ ଜ୍ୟୋତିଷର ଭୂମିକାରେ ଅବତୀର୍ଣ୍ଣ ହୋଇ ସର୍ବନିୟନ୍ତା ଶ୍ରୀଜଗନ୍ନାଥଙ୍କୁ ତାଙ୍କର ଦୈନିକ ରାଶିଫଳ ଶୁଣାଇଥାଏ, ସେତେବେଳେ ଜଗତ ଓ ଜଗନ୍ନାଥଙ୍କ ମଧ୍ୟରେ ଥିବା ସମ୍ପର୍କ ଅତୀବ ରହସ୍ୟମୟ ବୋଧହୋଇଥାଏ । ସ୍ରଷ୍ଟା ସୃଷ୍ଟିର ଉତ୍ସ । ଅପରନ୍ତୁ ସ୍ରଷ୍ଟାହିଁ ସୃଷ୍ଟିରୁ ଉଦ୍ଭାସିତ । ଏହି ତଥ୍ୟ ସ୍ରଷ୍ଟା ଓ ସୃଷ୍ଟିର ଅଭିନତ୍ୱ ପ୍ରତିପାଦନ କରିଥାଏ । ସୃଷ୍ଟି ଯେପରି ରହସ୍ୟମୟ ତାଠାରୁ ଅଧିକ ରହସ୍ୟମୟ ତାର ସ୍ରଷ୍ଟା । ସୃଷ୍ଟି ସ୍ରଷ୍ଟାର ଏକ କ୍ଷୁଦ୍ର ପ୍ରତିକୃତି । ସ୍ରଷ୍ଟାର ଅନ୍ତଃପ୍ରକୃତିର କଳାତ୍ମକ ପରିପ୍ରକାଶ ହିଁ ସୃଷ୍ଟି । ଶ୍ରୀଜଗନ୍ନାଥ ସ୍ୱୟଂସୃଷ୍ଟ । ଅପୌରୁଷେୟ ଦାରୁରୁ ଦେବଶିଳ୍ପୀ ବିଶ୍ୱକର୍ମାଙ୍କ ଦ୍ୱାରା ସେ ପରିକଳ୍ପିତ । ସୃଷ୍ଟି ମଧ୍ୟରେ ସ୍ରଷ୍ଟା (ବିଶ୍ୱକର୍ମା)ଙ୍କ ଅନ୍ତର୍ଦ୍ଧାନ ଯେତିକି ରହସ୍ୟଛନ୍ନ, ସୃଷ୍ଟି (ଶ୍ରୀଜଗନ୍ନାଥ)ଙ୍କ ଅପୂର୍ଣ୍ଣତା ତଦନୁରୂପ ରହସ୍ୟାବୃତ୍ତ । ଦେହ ଓ ଦେହୀ ଅର୍ଥାତ ସୃଷ୍ଟି ତଥା ସ୍ରଷ୍ଟାର ଏକୀଭୂତ ବିଗ୍ରହ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ପରିକଳ୍ପନା ଭଗବାନଙ୍କ ତପସ୍ୟାର ବିଭୂତି । ସୃଷ୍ଟିର ଅସ୍ତିତ୍ୱକୁ ଉପଲବ୍ଧି କରାଯାଉଥିଲା ବେଳେ ତାର ସ୍ରଷ୍ଟାକୁ ଅସ୍ୱୀକାର କରିହେବ ନାହିଁ । ତେଣୁ ଶ୍ରୀଜଗନ୍ନାଥଙ୍କ ଆକୃତିଗତ

ବିବୃତି ହିଁ ଶ୍ରୀଜଗନ୍ନାଥ ମୂର୍ତ୍ତି ପରିକଳ୍ପନା ବୈଶିଷ୍ଟ୍ୟର ଅନ୍ୟଏକ ଦିଗ ।

କେଉଁ ଦୁର୍ବଳ ମୁହୂର୍ତ୍ତରେ ମନୁଷ୍ୟ ମନରେ ଈଶ୍ୱର ବିଶ୍ୱାସର ଉଦ୍ରେକ ହୋଇଥିଲା, ତାର କୌଣସି ଐତିହାସିକ ପ୍ରମାଣ ଏ ଯାବତ ମିଳିନଥିଲେ ମଧ୍ୟ ମନୁଷ୍ୟ ଯେ ଏକଦା ପ୍ରକୃତିର ଭୟାବହ ରୂପ ସନ୍ଦର୍ଶନ କରି ଭୟରେ ହେଉ ଅଥବା ଜନଜୀବନ ଉପରେ ପ୍ରକୃତିର ଅପ୍ରତିହତ ପ୍ରଭାବ ଉପଲବ୍ଧି କରି ଭକ୍ତିରେ ହେଉ ପ୍ରକୃତିର ବିଭିନ୍ନ ବିଭବକୁ ଦେବତା ରୂପେ ପରିକଳ୍ପନା କରି ଉପାସନା କରିଥିବ; ଏହା ଅନସ୍ୱୀକାର୍ଯ୍ୟ । ମନୁଷ୍ୟ ଜୀବଜଗତର ଏକ ଉନ୍ନତ ସୃଷ୍ଟି । ଭଗବାନ ସ୍ୱୀୟ କଳ୍ପନା ଓ ଶ୍ରମ ଦେଇ ମଣିଷ ସୃଷ୍ଟି କରିଛନ୍ତି, ହେଲେ ନିଜର ବିଶ୍ୱାସ ଓ ବୌଦ୍ଧିକତା ବିନିଯୋଗରେ ମଣିଷ ପରିକଳ୍ପନା କରିଛି ଦେବତା । "ମନୁଷ୍ୟ ଦେହେ ଦିବ୍ୟଜ୍ଞାନ । ଦେଖି ସନ୍ତୋଷ ଭଗବାନ ।" ଉକ୍ତ ଭାଗବତୀୟ ସତ୍ୟ ଉପରେ ଆଧାରକରି ଈଶ୍ୱର ସର୍ବଦା ମନୁଷ୍ୟ ରୂପେ ଧରାବତରଣ କରିବାକୁ ଲାଳାୟିତ ହୋଇଛନ୍ତି । ତେଣୁ ମନୁଷ୍ୟ ତାର ଉପାସ୍ୟମାନଙ୍କୁ ତାହାରି ରୂପରେ ଚିତ୍ରଣ କରିବା ସ୍ୱାଭାବିକ । ପ୍ରୋକ୍ତ 'Anthropomorphic God'ର ପରିକଳ୍ପନା ମନୁଷ୍ୟର ପ୍ରକୃତିଗତ । ମନୁଷ୍ୟ ନିଜ ଆକୃତିରେ ଦେବତାଗଢି ଆରାଧନା କରିଥାଏ । ମାତ୍ର ଏ ଦୃଷ୍ଟିରୁ ଶ୍ରୀଜଗନ୍ନାଥ ସ୍ୱତନ୍ତ୍ର ଓ ଅନନ୍ୟ । କାରଣ ଶ୍ରୀଜଗନ୍ନାଥ ବିଗ୍ରହ ସହିତ ମନୁଷ୍ୟ ଆକୃତିର ସାଦୃଶ୍ୟ ତ ନାହିଁ, ପୁନଶ୍ଚ ଶ୍ରୀଜଗନ୍ନାଥ ମୂର୍ତ୍ତି ପରିକଳ୍ପନାରେ ହିନ୍ଦୁଧର୍ମର କୌଣସି ଦେବଦେବୀଙ୍କର ସାମାନ୍ୟତମ ସାମଞ୍ଜସ୍ୟ ମଧ୍ୟ ନାହିଁ । ତଥାପି ସେ ସର୍ବମତ-ବାଦୀମାନଙ୍କର ସମନ୍ୱୟାତ୍ମକ ଉପାସ୍ୟ । "ନିର୍ଗୁଣା ସଗୁଣାପି ଚ (ନିରୁକ୍ତ)", "ସାକାରୋଽପି ନିରାକାରଃ (ମହାନିର୍ବାଣ ତନ୍ତ୍ର)" । ମାଦଳାଦିଅଁ ଶ୍ରୀଜଗନ୍ନାଥ ନିରାକାର ଭାବେ ସେ ସର୍ବେନ୍ଦ୍ରିୟ ବିବର୍ଜିତ ଶୂନ୍ୟଦେବତା ମାତ୍ର ସାକାରବାଦୀମାନଙ୍କ ପାଇଁ ସ୍ୱୟଂ ସମ୍ପୂର୍ଣ୍ଣ ବିଗ୍ରହରେ ତାଙ୍କର ସର୍ବେନ୍ଦ୍ରିୟର ଉପସ୍ଥିତି ତାର୍ଯ୍ୟାତ୍ ଭାବେ ପ୍ରତିଭାତ । ସେହି ଅସାଧାରଣଙ୍କୁ ସାଧାରଣର ବୋଧଗମ୍ୟ କରିବା ପାଇଁ ତାଙ୍କର ଏବଂଭୂତ ବିଗ୍ରହର ପରିକଳ୍ପନା । ଦେହ ମଧ୍ୟରେ ଦେହାତୀତର ଚେତନାକୁ ବିନ୍ୟାସ କରିବାର ଇପ୍‌ସିତ ଚେଷ୍ଟାର ଶ୍ରେଷ୍ଠ ପରିଣତି ହିଁ ଶ୍ରୀଜଗନ୍ନାଥ ।

ସୂକ୍ଷ୍ମକୁ ସ୍ଥୂଳରେ ପରିଣତ କରି ଅବଧାରଣା କରିବା ମନୁଷ୍ୟର ଚିରନ୍ତନ ପ୍ରବୃତ୍ତି । ସେହି ପ୍ରବୃତ୍ତିର ବଶବର୍ତ୍ତୀ ହୋଇ ମନୁଷ୍ୟ ଶ୍ରୀଜଗନ୍ନାଥଙ୍କ ସ୍ଥୂଳରୂପ

ପରିକଳ୍ପନା କରିଛି, ଯହିଁରେ ସୁଷ୍ଠୁଗ୍ରଥିତ ଚିନ୍ତାଧାରା ଓ ବଳିଷ୍ଠ ଦାର୍ଶନିକ ତତ୍ତ୍ୱ ପରିସ୍ଫୁଟ । ସେହି ରୂପ ପରିକଳ୍ପନା କେବଳ ଦେବଶିଳ୍ପୀ ବିଶ୍ୱକର୍ମା (ଅନନ୍ତମହାରଣା)ର ନୁହେଁ, ସେ ବିଗ୍ରହରେ ନିଖିଳମାନବର ସାମଗ୍ରିକ ଚିନ୍ତା ହିଁ ପ୍ରକଟିତ । ତତ୍ତ୍ୱରୁ ପ୍ରତୀକର ସୃଷ୍ଟି ଓ ପ୍ରତୀକର କଳାତ୍ମକ ପରିଣତି ହିଁ ବିଗ୍ରହ । ପ୍ରତୀକକୁ ଅବବୋଧ ନିମିତ୍ତ ତତ୍ତ୍ୱାନୁଶୀଳନ ଏକାନ୍ତ ଅପରିହାର୍ଯ୍ୟ । ପ୍ରତୀକ ରୂପ ପରିଗ୍ରହ କଲେ ତନ୍ମଧ୍ୟରେ ତତ୍ତ୍ୱ ହିଁ ଲୁକ୍‌କାୟିତ ଥାଏ । ଜଡବସ୍ତୁ କାଠଗଣ୍ଡିକୁ ଚିତ୍ରଣ କରି ରୂପ ପ୍ରଦାନ କରାଯାଇଥିଲେ ହେଁ ତନ୍ମଧ୍ୟରେ ସଂଗୋପିତ ତତ୍ତ୍ୱହିଁ ଜନମାନସକୁ ଆଲୋଡ଼ିତ କରି ଆସୁଅଛି । ମଣିଷର କଳ୍ପନା ବିଳାସଜ ସାଙ୍କେତିକ ବିଗ୍ରହ ଶ୍ରୀଜଗନ୍ନାଥ ଏକାଦିକ୍ରମେ ସାବଲୀଳ ଓ ରୁକ୍ଷତାର ପ୍ରତୀକ । 'ସାଂଖ୍ୟ ଦର୍ଶନ'ର ଚିତ୍‌ଶକ୍ତି ଓ ସ୍ୱରୂପାବସ୍ଥା ଶ୍ରୀଜଗନ୍ନାଥ ବିଗ୍ରହରେ ସନ୍ନିହିତ । ପୁନଶ୍ଚ ସୃଷ୍ଟିକର୍ତ୍ତା ବ୍ରହ୍ମା 'ସ୍କନ୍ଦପୁରାଣ'ରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଶ୍ରୀଜଗନ୍ନାଥ ମୂର୍ତ୍ତିତତ୍ତ୍ୱ ସମ୍ବନ୍ଧରେ କହିଛନ୍ତି—

"ନୈକାନେକଂ ସ୍ଥୂଳ ସୁକ୍ଷ୍ମାଣୁ ମୂର୍ତ୍ତେ
ବ୍ୟୋମାତୀତଂ ବ୍ୟୋମରୂପ ପ୍ରକାଶଂ
ବ୍ୟାମୋକାରଂ ବ୍ୟାପିନୋ ବ୍ୟୋମସ୍ଥଂ ସଃ
ବ୍ୟୋମାରୂଢଂ ବ୍ୟୋମକେଶାବ୍‌ଜ ଯୋନେ ॥"

ଏକ-ଅନେକ, ସ୍ଥୂଳ-ସୂକ୍ଷ୍ମ, ସଗୁଣ-ନିର୍ଗୁଣ, ଶୂନ୍ୟ-ଅଶୂନ୍ୟ ପ୍ରଭୃତି ସମସ୍ତ ବିରୋଧାଭାସର ପ୍ରମୂର୍ତ୍ତ ପ୍ରତିକ ଶ୍ରୀଜଗନ୍ନାଥ । 'ମହାନିର୍ବାଣ ତନ୍ତ୍ର' ଅନୁସାରେ— "ଗୁଣକ୍ରିୟାନୁସାରେଣ କ୍ରିୟତେ ରୂପକଳ୍ପନା"—ଗୁଣ ଓ କ୍ରିୟାକୁ ପ୍ରାଧାନ୍ୟଦେଇ ଶ୍ରୀଜଗନ୍ନାଥଙ୍କ ଏତାଦୃଶ ବିଗ୍ରହ ନିର୍ମିତ । ଶ୍ରୀଜଗନ୍ନାଥ ଯେପରି ବିଶ୍ୱାନୁଗ (Within the Universe) ସେହିପରି ବିଶ୍ୱାତିଗ (Beyond of the Universe) ମଧ୍ୟ । ସୀମିତ ବିଶ୍ୱରେ ଅସୀମ ରୂପେ ସେ ବିରାଜିତ । ମନୁଷ୍ୟ ତାର ଜୀବନକାଳ ମଧ୍ୟରେ ପର୍ଯ୍ୟାପ୍ତ ବାୟୁ ଶ୍ୱାସକ୍ରିୟାରେ ଗ୍ରହଣ କରିଥାଏ । ମାତ୍ର ଅନୁରୂପ ପରିମାଣର ବାୟୁ ସଞ୍ଚିତ ହେବାପାଇଁ ତା'ର ଫୁସ ଫୁସର ଆକାର ଯେପରି ଯଥେଷ୍ଟ ନୁହେଁ; ସେହିପରି ବିରାଟ ଆତ୍ମାପୁରୁଷ ଶ୍ରୀଜଗନ୍ନାଥଙ୍କର ଉଦ୍ଦିଷ୍ଟ ସଙ୍କେତ ଧର୍ମୀ ପ୍ରତୀକ ପରିକଳ୍ପନା ବ୍ୟତୀତ ଉପାୟାନ୍ତର ନଥିଲା । ତେଣୁ ତାହା ମନୁଷ୍ୟର ସୀମିତ ଦୃଷ୍ଟିରେ ଅସମ୍ପୂର୍ଣ୍ଣ ବୋଧହେବା ସ୍ୱାଭାବିକ । ଦ୍ୱାଦଶ ବର୍ଷର ସାଧନା ପରେ ସିଦ୍ଧ ଯୋଗୀମାନେ ଶ୍ରୀଜଗନ୍ନାଥଙ୍କ ସାଦୃଶ୍ୟ

ଲାଭ କରିଥାନ୍ତି । 'ଗୋରକ୍ଷ ସିଦ୍ଧାନ୍ତ' ଅନୁସାରେ ତାଙ୍କୁ ମହାସିଦ୍ଧ ରୂପେ ପ୍ରାଧାନ୍ୟ ଅର୍ପିତ ହୋଇ କୁହାଯାଇଛି—

"ତ୍ରୈଲୋକ୍ୟ ପୂଜ୍ୟନ୍ତେ ସିଦ୍ଧି ସତ୍ୟ ଶ୍ରୀଭୈରବୋ ଯଥା
ଏବଂ ଦ୍ୱାଦଶ ବର୍ଷେଷୁ ସିଦ୍ଧଯୋଗୀ ମହାବଳଃ ।।"

ଶ୍ରୀଜଗନ୍ନାଥ ହେଉଛନ୍ତି ବିଶ୍ୱଦର୍ଶନର ଏକ ସାର୍ଥକ ସମୀକରଣ । "Infinity comes out of infinity" ଅନନ୍ତରୁ ଅନନ୍ତର ଉଦ୍ଭବ । ଶୂନ୍ୟତା ଅର୍ଥ ପୂର୍ଣ୍ଣତା । ସେଥିପାଇଁ ଯଥାର୍ଥରେ କୁହାଯାଇଛି—

"ଓଁ ପୂର୍ଣ୍ଣମିଦଃ ପୂର୍ଣ୍ଣମିଦଂ ପୂର୍ଣ୍ଣାତ୍ ପୂର୍ଣ୍ଣମିଦୁଚ୍ୟତେ
ପୂର୍ଣ୍ଣସ୍ୟ ପୂର୍ଣ୍ଣମିଦାୟ ପୂର୍ଣ୍ଣମେବାବ ଶିଷ୍ୟତେ ।।"

ପୂର୍ଣ୍ଣରୁ ପୂର୍ଣ୍ଣ ଗଲାପରେ ପୂର୍ଣ୍ଣରହେ । ଅସୀମରୁ ଅସୀମକୁ ବାଦଦେଲେ ଅସୀମ ହିଁ ଅବଶେଷ ରହେ ।

"ଜଗନ୍ନାଥ ହୁଁ ଷୋଳକଳା । ତହୁଁ କଳାଏ ନନ୍ଦବଳା ।।
କଳାକ ଷୋଳକଳା କରି । ଗୋପେ ବିହରେ ନରହରି ।।"
(ଶ୍ରୀଜଗନ୍ନାଥ ଚରିତାମୃତ-ଦିବାକର ଦାସ)

ଷୋଳକଳା ବିଶିଷ୍ଟ ପରିପୂର୍ଣ୍ଣ ବିଗ୍ରହ ଶ୍ରୀଜଗନ୍ନାଥଙ୍କ ଠାରୁ କଳାଏ ନେଇ ଶ୍ରୀକୃଷ୍ଣ ଷୋଳକାରେ ପରିଣତ ହୋଇଥିଲେ ମଧ୍ୟ ଶ୍ରୀଜଗନ୍ନାଥ ମୌଳିକତଃ ଷୋଳକଳା-ଯୁକ୍ତ ହୋଇ ରହିଛନ୍ତି । ଶ୍ରୀଜଗନ୍ନାଥ ଅନାଦି, ସମସ୍ତଙ୍କର ଆଦି । ସେ ସ୍ୱୟଂସୃଷ୍ଟ । ସେ ନିଜେ ବିଶ୍ୱକର୍ମା ରୂପେ ଆବିର୍ଭୂତ ହୋଇ ସ୍ୱ ବିଗ୍ରହ ନିର୍ମାଣ ପରେ ଯଥା ସମୟରେ ଅନ୍ତର୍ହିତ ହୋଇଯାଇଛନ୍ତି । ସେ ହିଁ ଏକମାତ୍ର ସ୍ୱୀୟ ବିଗ୍ରହ ନିର୍ମାଣରେ ପଟୁତା ପ୍ରଦର୍ଶନ କରିପାରିଛନ୍ତି । କାରଣ କୌଣସି ସ୍ଥପତି, ଚିତ୍ରକର, ଶିଳ୍ପୀ, ବୈଜ୍ଞାନିକ, ଯନ୍ତ୍ରୀ, ତଥ୍ୟ ଓ ତତ୍ତ୍ୱଜ୍ଞ ତଦପେକ୍ଷା ସୁନ୍ଦରତର ବିଗ୍ରହର ପରିକଳ୍ପନା କରିପାରିବ କି ? ବିଶ୍ୱକର୍ମାଙ୍କ ଚିନ୍ତା ଓ ଚିନ୍ତନ ମଧ୍ୟରେ ଅପୂର୍ଣ୍ଣ ରହିଯାଇଛନ୍ତି ଶ୍ରୀଜଗନ୍ନାଥ । ଅତଏବ ଶ୍ରୀଜଗନ୍ନାଥ ମୂର୍ତ୍ତି ପରିକଳ୍ପନା କୁସଂସ୍କାରଗ୍ରସ୍ତ ମନୁଷ୍ୟର ଏକ ଖିଆଲ ନୁହେଁ କିମ୍ବା ପ୍ରତ୍ନତାତ୍ତ୍ୱିକ ତଥ୍ୟାନୁସାରେ କୌଣସି ଐତିହାସିକ

ଘଟଣା ପ୍ରବାହର ଆକସ୍ମିକ ଘଟିଣଟି ମଧ୍ୟ ନୁହେଁ । ଶ୍ରୀଜଗନ୍ନାଥ ଆଦୌ ଅସମ୍ପୂର୍ଣ୍ଣ ନୁହନ୍ତି ବରଂ ସେ ସ୍ୱୟଂ ସମ୍ପୂର୍ଣ୍ଣ । କାରଣ ହିନ୍ଦୁଶାସ୍ତ୍ରରେ ଅପୂର୍ଣ୍ଣ, ଭଗ୍ନ ଅଥବା ବିକଳାଙ୍ଗ ମୂର୍ତ୍ତିପୂଜା ନିଷିଦ୍ଧ କରାଯାଇଥିଲେ ମଧ୍ୟ ଅର୍ଦ୍ଧମାତ୍ରା ସଂଯୁକ୍ତ ପ୍ରଣବାବତାର ଶ୍ରୀଜଗନ୍ନାଥଙ୍କ ଉପାସନାକୁ କୁତ୍ରାପି ବିରୋଧ କରାଯାଇ ନାହିଁ । ଅପରନ୍ତୁ ବିଶ୍ୱବ୍ୟାପୀ ଆଗ୍ରହ ବୃଦ୍ଧି ପାଉଛି । ଶ୍ରୀଜଗନ୍ନାଥଙ୍କ ଏତାଦୃଶ ବିଗ୍ରହ ହିଁ ନାନାବିଧ ତର୍କ ବିତର୍କ ସୃଷ୍ଟିର ମୂଳକାରଣ । ପୌତ୍ତଳିକତାକୁ ସମ୍ମାନ ଦେଇ ଏହି ବିଗ୍ରହ ପରିକଳ୍ପନା କରାଯାଇଥିଲେ ଶ୍ରୀଜଗନ୍ନାଥ ହୁଏତ ଅନ୍ୟାନ୍ୟ ହିନ୍ଦୁଦେବତାଙ୍କ ସାଦୃଶ୍ୟ ବହନ କରିଥାନ୍ତେ । ମାତ୍ର ବୈଦିକ ସିଦ୍ଧାନ୍ତ ଅନୁସାରେ "ନ ତସ୍ୟ ପ୍ରତିମା ଅସ୍ତି"- ଅର୍ଥାତ୍ ସେ ବିଗ୍ରହ ବା ପ୍ରତିମା ନୁହନ୍ତି ବରଂ ତାଙ୍କୁ ସଙ୍କେତ ବା ପ୍ରତୀକ ରୂପେ ଅଭିବ୍ୟକ୍ତ କରିବା ଅଧିକ ଯୁକ୍ତିଯୁକ୍ତ । ସେଥିପାଇଁ ଶ୍ରୀଜଗନ୍ନାଥ ପୀଠ ଏକ ପ୍ରତୀକ ପୀଠ ମାତ୍ର । ସମ୍ପ୍ରତି କେତେକ ପଣ୍ଡିତ ଅନ୍ୟବ୍ୟକ୍ତି ମତପ୍ରଦାନ କରନ୍ତି ଯେ ମୃତ ମହାପୁରୁଷ ମାନଙ୍କର ଦେହାବଶେଷ ଧାରଣ ନିମନ୍ତେ ଯେଉଁ ଶବାଧାର ପେଟିକା ବା ବାକ୍ସ ପ୍ରଚଳିତ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଅନୁରୂପ ଏକ ଶବଧାର, କଫିନ ବା କ୍ୟାସକେଟ୍ (Casket) ଅଟେ । ପରେ ପରେ ଉକ୍ତିର ଆତିଶଯ୍ୟ ହେତୁ ଦୁଇହାତ ଓ ଦୁଇଗୋଟି ଚକାଡୋଳା ସଂଯୋଗରେ ଏତାଦୃଶ ବିଗ୍ରହ ପରିକଳ୍ପନା କରାଯାଇଛି । ଶ୍ରୀଜଗନ୍ନାଥଙ୍କ ବିଗ୍ରହ ସର୍ବଦୌ ଶ୍ରୀକୃଷ୍ଣଙ୍କ ଅପୋଡାପିଣ୍ଡ ବା ବୁଦ୍ଧଦେବଙ୍କ ବାମକଳ ଦନ୍ତ ଗର୍ଭିତ ଏକ ଶବାଧାର ନୁହେଁ । ଶ୍ରୀଜଗନ୍ନାଥଙ୍କ ବିଗ୍ରହରେ ସସୀମ ମଧ୍ୟରେ ଅସୀମର ବ୍ୟଞ୍ଜନା ସର୍ବୋପରି ସାର୍ବଜନୀନ ବିଶ୍ୱବ୍ୟାପ୍ତ ଚିନ୍ତା ପ୍ରକଟିତ । ଦାର୍ଶନିକ ତତ୍ତ୍ୱ ଅନଭିଜ୍ଞ ପାଶ୍ଚାତ୍ୟ ଲେଖକ ଏଡଓ୍ୱାର୍ଡ୍ ଥମ୍ସନ୍ ଶ୍ରୀଜଗନ୍ନାଥ ବିଗ୍ରହ ଓ ଶ୍ରୀମନ୍ଦିରକୁ କୁତ୍ସିତ ବୋଲି ଆକ୍ଷେପକରି ସ୍ୱୀୟ ରୁଗ୍ଣ ରୁଚିବୋଧ ତଥା କୁତ୍ସିତ କଳାଜ୍ଞାନର ପରିଚୟ ପ୍ରଦାନ କରିଛନ୍ତି ମାତ୍ର । ପଣ୍ଡିତ ଜବାହାରଲାଲ ନେହେରୁ ଏକଦା ଶ୍ରୀଜଗନ୍ନାଥ ଦର୍ଶନ ପରେ ସ୍ୱୀୟ ପ୍ରତିକ୍ରିୟା ପ୍ରକାଶକରି ଡଃ ହରେକୃଷ୍ଣ ମହତାବଙ୍କୁ ଜିଜ୍ଞାସା କରିଥିଲେ, "ମହତାବ । ତୁମେ ଜାଣ ଏ ଜଗନ୍ନାଥର ଇତିବୃତ୍ତି କିଛି ? ମୁଁ ଯେତେବେଳେ ପୁରୀ ଯାଇଥିଲି ସେ ମୂର୍ତ୍ତି ଦେଖିଥିଲି । ମୋର ଦେହ ସେ କୁତ୍ସିତତା ଦର୍ଶନରେ ଶିହରି ଉଠିଥିଲା । ସେ ମୂର୍ତ୍ତି କ'ଣ ? ସେ ସମ୍ବନ୍ଧରେ ଜନଶ୍ରୁତି ବା କଅଣ ? କାହିଁକି ସେପରି ପୂଜା କରାଯାଉଛି ।"

ପଣ୍ଡିତ ଉପାଧିଧାରୀ ମୋତିଲାଲ ପଣ୍ଡିତଙ୍କ ବଂଶରେ ଜନ୍ମଲାଭ କରିଥିଲେ ମଧ୍ୟ ସେ ଯେ ପ୍ରକୃତରେ ପାଣ୍ଡିତ୍ୟ ଅର୍ଜନ କରିନଥିଲେ ତାହା ତାଙ୍କର ଉପର୍ଯ୍ୟୁକ୍ତ

ପ୍ରତିକ୍ରିୟାରୁ ହିଁ ସୂଚିତ ହୋଇଥାଏ । ପରବର୍ତ୍ତୀ ସମୟରେ ଡ଼ଃ ମହତାବ ଶ୍ରୀଜଗନ୍ନାଥଙ୍କ ଇତିବୃତ୍ତି ସମ୍ବନ୍ଧରେ ସ୍ପଷ୍ଟୀକରଣ ଦେଇ ନେହେରୁଙ୍କ ମନରୁ ଭ୍ରାନ୍ତ ଧାରଣା ଦୂର କରିଥିଲେ କି ନା ସେ ସଂକ୍ରାନ୍ତରେ କୌଣସି ପ୍ରମାଣ ନାହିଁ । ଯୌନମୂର୍ତ୍ତି ଗୁମ୍ଫିତ ଶ୍ରୀମନ୍ଦିର ଚତୁଃପାର୍ଶ୍ୱରେ କୂର୍ମବେଢ଼ା ନିର୍ମାଣ କରି ଇନ୍ଦ୍ରିୟ ସଂଯମତା ରକ୍ଷାପାଇଁ ଜନସାଧାରଣଙ୍କୁ ସୂଚନା ପ୍ରଦତ୍ତ ହୋଇଅଛି । ଶରୀର ଅନିତ୍ୟ ହେଲେ ମଧ୍ୟ ମନୁଷ୍ୟ ସଂଯତେନ୍ଦ୍ରିୟ ହୋଇପାରିଲେ ପୁରୁଷୋତ୍ତମ ହୁଏ । ଇନ୍ଦ୍ରିୟ ସଂଯମତା ପ୍ରଚାର ପାଇଁ ଶ୍ରୀଜଗନାଥ ମୂର୍ତ୍ତିରେ ଜ୍ଞାନେନ୍ଦ୍ରିୟ ଓ କର୍ମେନ୍ଦ୍ରିୟ ଗୁଡିକୁ ପ୍ରକଟିତ କରାଯାଇ ନାହିଁ । ଶ୍ରୀଜଗନ୍ନାଥଙ୍କ ଅବୟବ ହୀନତା ଇନ୍ଦ୍ରିୟ ସଂଯମତା ପ୍ରଚାର ପାଇଁ ଏକ ଆଦର୍ଶ ମାତ୍ର ।

ଶ୍ରୀଜଗନ୍ନାଥ ମାଦଳା, କୁତ୍ସିତ । ମାତ୍ର ସେହି ଅଙ୍ଗବୈକଲ୍ୟ ଯୁକ୍ତ ଦେବତାର ଦର୍ଶନ ନିମିତ୍ତ ଜନତାର ଅଦମ୍ୟ ଉତ୍କଣ୍ଠାର ଅନ୍ତନାହିଁ । କୁତ୍ସିତର ଅଶ୍ଳେଷ ଯେ ଅତି ନିବିଡ଼ ଏହା ଶ୍ରୀଜଗନ୍ନାଥ ଚେତନାରେ ହିଁ ପ୍ରତିପାଦିତ । ସେ ଯେ ବାସ୍ତବରେ କୁତ୍ସିତ ନୁହନ୍ତି ତାହାହିଁ ଶ୍ରୀଜଗନ୍ନାଥ ସଂସ୍କୃତିର ବିଶେଷତ୍ୱ । ଶ୍ରୀବିଗ୍ରହରେ କଳା ଭାସ୍କର୍ଯ୍ୟର ବୈଶିଷ୍ଟ୍ୟ ନାହିଁ ସତ୍ୟ, ମାତ୍ର ଏହା ମଧ୍ୟରେ ଯେଉଁ ନୈସର୍ଗିକ ଆକର୍ଷଣ ଶକ୍ତି ରହିଛି; ତଦ୍ୱାରା ଶିଳ୍ପୀର ଗଭୀର ଅନ୍ତର୍ଦୃଷ୍ଟିର ପରିଚୟ ମିଳିଥାଏ । ସୌନ୍ଦର୍ଯ୍ୟ ନାହିଁ ଯୁବତୀର କାମୋଦ୍ରେକକାରୀ ଅବୟବ ମାନଙ୍କରେ । ବାସ୍ତବରେ ଦର୍ଶକର ଦର୍ଶନେନ୍ଦ୍ରିୟ ହିଁ ସୌନ୍ଦର୍ଯ୍ୟ ଉପଲବ୍ଧିର ପ୍ରଧାନ ଉତ୍ସ । ଯେହେତୁ ସର୍ବଦୃଷ୍ଟିରେ ଶ୍ରୀଜଗନ୍ନାଥ ଚିର ସୁନ୍ଦର ସର୍ବୋପରି ତାଙ୍କର ଚକାଡୋଳା ଦୁଇଟି ବୋଧହୁଏ ଆହୁରି ସୁନ୍ଦର, ତେଣୁ ଶ୍ରୀଜଗନ୍ନାଥ ଦର୍ଶନରେ କାହାରି ମନରେ ବିରକ୍ତି ଆସେ ନାହିଁ, ବରଂ ଅନୁରାଗ ଜାତ ହୋଇଥାଏ । ସୌନ୍ଦର୍ଯ୍ୟର ଆକର୍ଷଣ ଚିରନ୍ତନ ଓ ସାର୍ବଜନୀନ । ସର୍ବେନ୍ଦ୍ରିୟ ବିବର୍ଜିତ ଅବୟବ ରହିତ ମାଦଳାରେ ଭରିରହିଛି ଯେଉଁ ଦିବ୍ୟାନନ୍ଦଦାୟୀ ସୌନ୍ଦର୍ଯ୍ୟ ସେହି "ସୁନ୍ଦର ତୃପ୍ତିର ଅବସାଦ ନାହିଁ । ଯେତେ ଦେଖିଲେ ହେଁ ନୂଆ ଦିଶୁଥାଇ ।" A thing of beauty is joy for ever.— ବାରମ୍ବାର ଶ୍ରୀ ଜଗନ୍ନାଥଙ୍କୁ ଦର୍ଶନ କରିବା ପାଇଁ ଦର୍ଶକ ମନରେ ଅହେତୁକୀ ଆଗ୍ରହ ବୃଦ୍ଧିପ୍ରାପ୍ତ ହୁଏ ।

"ସତ୍ୟ ସେହି ଶିବ ସେହି ସେ ଏକ ସୁନ୍ଦର
ଭୂମା ସେ ରହିଛି ପୁରି ବିଶ୍ୱ ଚରାଚର ।"

ଜଗନ୍ମୟ ପ୍ରଭୁ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ଅଦ୍ଭୁତ, ଅଭିନବ, ଅଦ୍ୱିତୀୟ ଓ ନିତ୍ୟ ନୂତନ । ଏହାର ବିକଳ୍ପ ଅକଳ୍ପନୀୟ ।

ଶ୍ରୀଜଗନ୍ନାଥ ବିଗ୍ରହ Fine Art ଦୃଷ୍ଟିରୁ ଅନନ୍ୟ । ଏକ ମଧ୍ୟରେ ଅନେକ, ସୀମା ମଧ୍ୟରେ ଅସୀମ, ସାକାର ମଧ୍ୟରେ ଅଣାକାର, ଭବାତୀତରୁ ଭବମୟ, ଅଚିନ୍ତ୍ୟରୁ ଲୀଳାମୟ, ଅରୂପ ମଧ୍ୟରେ ରୂପମୟ ଓ ଶୂନ୍ୟତା ମଧ୍ୟରେ ପୂର୍ଣ୍ଣତାର ତାତ୍ତ୍ୱିକ୍ ପରିପ୍ରକାଶ ଘଟିଛି ଏହି ବିଗ୍ରହରେ । ଯାହାକି ବିଭିନ୍ନ ଦର୍ଶକ ମନରେ ଭିନ୍ନ ଭିନ୍ନ ଦ୍ୟୋତନା ସୃଷ୍ଟି କରିଥାଏ । 'ପିକାସୋ'ଙ୍କୁ ଯେଉଁମାନେ Exact Artର ଉଦ୍ଭାବକ ବୋଲି ସମ୍ମାନ ପ୍ରଦାନ କରିଥାନ୍ତି, ସେମାନେ ହୁଏତ ଜାଣି ନାହାନ୍ତି ଯେ ବହୁ ଶତାବ୍ଦୀ ପୂର୍ବରୁ ଶ୍ରୀଜଗନ୍ନାଥ ବିଗ୍ରହରେ Pure Abstract Artର ସଫଳ ରୂପାୟନ ସଂସାଧିତ ହୋଇସାରିଛି । ଷୋଡ଼ଶକଳାର ମୂର୍ତ୍ତିମନ୍ତ ପ୍ରତୀକ ଶ୍ରୀଜଗନ୍ନାଥ ଆନ୍ତର୍ଜାତିକ କ୍ଷେତ୍ରରେ କଳାବିତ୍‌ମାନଙ୍କ ଚିନ୍ତାରାଜ୍ୟରେ ଗଭୀର ଆଲୋଡ଼ନ ସୃଷ୍ଟିକରି ଆସିଛନ୍ତି । ଭୌଗୋଳିକର ଆବିଷ୍କାର, ଐତିହାସିକର ତଥ୍ୟ, ପୌରାଣିକର ତତ୍ତ୍ୱ, ବୈଜ୍ଞାନିକର ପନ୍ଥା, ଗବେଷକର ଅନୁସନ୍ଧିତ୍ସା ଓ ଦାର୍ଶନିକର ଦର୍ଶନ ଶ୍ରୀଜଗନ୍ନାଥ ମୂର୍ତ୍ତି ପରିକଳ୍ପନା ନିକଟରେ ସ୍ତମ୍ଭିତ ହୋଇଯାଇଛି ।

ପଲକ ବିହୀନ ଚକାଡୋଳା ଯୁଗଳରେ ଶ୍ରୀଜଗନ୍ନାଥଙ୍କ ସ୍ୱାତନ୍ତ୍ର୍ୟ ସୁରକ୍ଷିତ । ତାଙ୍କର ଚକ୍ଷୁପତାଶୂନ୍ୟ ଗୋଲକାର ଚକ୍ଷୁରେ ବିନ୍ଦୁ ଓ ବୃତ୍ତର ପରିକଳ୍ପନା । ବିନ୍ଦୁ ଓ ବୃତ୍ତ ଯଥାକ୍ରମେ ବ୍ରହ୍ମ ଓ ଜଗତସ୍ୱରୂପ । ବିନ୍ଦୁ ବ୍ୟତୀତ ବୃତ୍ତର ଯେପରି କଳ୍ପନା ଅସମ୍ଭବ, ସେହିପରି ବୃତ୍ତ ମଧ୍ୟରେ ବିନ୍ଦୁର ଅବସ୍ଥିତି ମଧ୍ୟ ଅନସ୍ୱୀକାର୍ଯ୍ୟ । ସୂର୍ଯ୍ୟ-ଗ୍ରହ-ଉପଗ୍ରହ-ନକ୍ଷତ୍ର ସବୁ ଗୋଲକାର । ଏ ସବୁର ପ୍ରତୀକ ରୂପେ ଶ୍ରୀଜଗନ୍ନାଥଙ୍କ ଚକ୍ଷୁ ଯୁଗଳକୁ ଚକାଡୋଳା ସଦୃଶ କରାଯାଇଛି । ଏକମାତ୍ର ଉକ୍ତ ଚକାଡୋଳା ଯୋଗୁଁ ଶ୍ରୀଜଗନ୍ନାଥ ଅନ୍ୟ ଦେବତାଙ୍କ ଠାରୁ ସ୍ୱତନ୍ତ୍ର ପ୍ରତିଭାତ ହୋଇଥାନ୍ତି । ହିନ୍ଦୁ ସମାଜର ବିଭିନ୍ନ ଦେବଦେବୀଙ୍କର ହସ୍ତଗୁଡିକରେ ଅଭୟ-ବରଦ ମୁଦ୍ରା ପ୍ରଦର୍ଶିତ କିମ୍ବା ଭିନ୍ନ ଭିନ୍ନ ଆୟୁଧ ବିମଣ୍ଡିତ ହୋଇଥିବା ସ୍ଥଳେ ସୃଷ୍ଟିକୁ ଆଲିଙ୍ଗନ କରିବାର ଉଦାରତା ଅନ୍ୟକୌଣସି ଦେବତାଙ୍କ ଠାରେ ପରିଲକ୍ଷିତ ହୋଇ ନଥାଏ । ଆଲିଙ୍ଗନୋଦ୍ୟତ ବଳିଆର ଭୁଜ ଯୋଗୁଁ ଦେବତାମାନଙ୍କ ମଧ୍ୟରେ ଶ୍ରୀଜଗନ୍ନାଥଙ୍କ ବୈଶିଷ୍ଟ୍ୟ ଅନତିକ୍ରମ୍ୟ ।

'ସାଂଖ୍ୟ ଦର୍ଶନ'ରେ ପୁରୁଷ ପ୍ରକୃତି ତତ୍ତ୍ୱ ବିସ୍ତାରିତ ଭାବେ ବର୍ଣ୍ଣିତ। ପୁରୁଷ Active ଓ ପ୍ରକୃତି Passive । ପୁରୁଷ ପ୍ରକୃତି ମିଳନରେ ନୂତନ ସୃଷ୍ଟି ଅବଶ୍ୟମ୍ଭାବୀ । ପୁରୁଷ ସୃଷ୍ଟି କରିବାକୁ ଅକ୍ଷମ ତେଣୁ ପ୍ରକୃତିର ଅବତାରଣା । ପୁରୁଷ ବିନା ପ୍ରକୃତି ନିଷ୍କ୍ରିୟ କିନ୍ତୁ ପ୍ରକୃତି ବ୍ୟତିରେକେ ପୁରୁଷର ପୌରୁଷ ନିଷ୍ଫଳ । ପ୍ରକୃତି ସର୍ବଦା ପୁରୁଷର ଅନୁଗାମିନୀ ଯେହେତୁ ପୁରୁଷ ନିର୍ଗୁଣ ତଥା ଜ୍ଞାନମୟ । ଏହି ପରିପ୍ରେକ୍ଷୀରେ ହିନ୍ଦୁ ସମାଜରେ ପ୍ରକୃତି ପୁରୁଷର ପ୍ରତୀକରୂପେ ସର୍ବତ୍ର ଲକ୍ଷ୍ମୀନାରାୟଣ, ଲକ୍ଷ୍ମୀନୃସିଂହ, ଶିବପାର୍ବତୀ, ହରଗୌରୀ ଉମାମହେଶ୍ୱର, ରାଧାକୃଷ୍ଣ ଓ ସୀତାରାମ ପ୍ରଭୃତି ଯୁଗଳ ମୂର୍ତ୍ତି ଉପାସନା ପ୍ରଚଳିତ । ଅତଏବ ହିନ୍ଦୁ ଉପାସନା ପରମ୍ପରା ସାଧାରଣତଃ ସୃଷ୍ଟି ଦ୍ୟୋତକ । ମାତ୍ର ଶ୍ରୀମନ୍ଦିରରେ ଏହାର ବ୍ୟତିକ୍ରମ ତଥା ସ୍ୱାତନ୍ତ୍ର୍ୟ ପ୍ରତିଫଳିତ ହୋଇଥାଏ । କାରଣ ଶ୍ରୀମନ୍ଦିର ରତ୍ନସିଂହାସନ ଉପରେ କ୍ଷେତ୍ରାଧିପତି ଶ୍ରୀଜଗନ୍ନାଥଙ୍କ ସହିତ ବିଷ୍ଣୁପାଟରାଣୀ ମହାଲକ୍ଷ୍ମୀ ଏକତ୍ର ଉପାସିତ ହୁଅନ୍ତି ନାହିଁ । ଯଜ୍ଞମୂର୍ତ୍ତି ପରଂବ୍ରହ୍ମ ତ୍ରିଗୁଣାତ୍ମକ ବିଗ୍ରହ ଶ୍ରୀଜଗନ୍ନାଥ ଜ୍ୟେଷ୍ଠଭ୍ରାତ ବଳଭଦ୍ର ଓ କନିଷ୍ଠା ଭଗିନୀ ସୁଭଦ୍ରାଙ୍କ ସହ ଏକତ୍ର ଉପାସିତ ହୋଇଥାନ୍ତି । ସହୋଦର ଜାତ ଭାଇଭଉଣୀଙ୍କ ଶରୀର ଗଠନରେ ଅନେକାଂଶରେ ସାମଞ୍ଜସ୍ୟ ପରିଦୃଷ୍ଟ ହୋଇଥାଏ । ଶ୍ରୀବିଗ୍ରହତ୍ରୟଙ୍କ ଆକୃତି-ଗତ ସାଦୃଶ୍ୟରୁ ସେମାନେ ଯେ ପରସ୍ପର ଭାଇଭଉଣୀ ଏହା ସ୍ପଷ୍ଟ ପ୍ରତିଭାତ ହୋଇଥାଏ । ନାରୀ : ଜନନୀ, ଜାୟା, ଭଗିନୀ ଓ କନ୍ୟା ରୂପେ ପୁରୁଷ ସହିତ ସମ୍ବନ୍ଧାନ୍ୱିତ ହେଲେ ହେଁ ତନ୍ମଧ୍ୟରୁ ଭାଇଭଉଣୀ ସମ୍ପର୍କ ସର୍ବୋତ୍କୃଷ୍ଟ । ଏହାହିଁ ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନୁସୃତ ହୋଇଅଛି । ରଥଯାତ୍ରା କାଳରେ ଶ୍ରୀଜଗନ୍ନାଥ ମହାଲକ୍ଷ୍ମୀଙ୍କୁ ଶ୍ରୀମନ୍ଦିର ଦାୟିତ୍ୱ ଦେଇ ଭାଇଭଉଣୀଙ୍କ ସହିତ ଶ୍ରୀଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାନ୍ତି । ଶ୍ରୀଜଗନ୍ନାଥଙ୍କର ଏହି ପବିତ୍ର ତଥା ପ୍ରସିଦ୍ଧ ଯାତ୍ରା ମାଧ୍ୟମରେ ଭାଇଭଉଣୀର ପବିତ୍ର ବଳୟ ମଧ୍ୟରେ ସ୍ୱାମୀ-ସ୍ତ୍ରୀର ନିବିଡ଼ ଆଶ୍ଳେଷ ଶିଥିଳ ହୋଇଯାଇଛି । ବିଶ୍ୱଭ୍ରାତୃତ୍ୱ (Fraternity) ପ୍ରତିଷ୍ଠା ନିମିତ୍ତ ଏହି ଆଦର୍ଶ ମାନବ ସମାଜ ପ୍ରତି ଏକ ଉଦାତ୍ତ ଉଦ୍‌ଘୋଷଣ ମନ୍ତ୍ର । ଏତଦ୍‌ବ୍ୟତୀତ ଅନୈତିକ ଅନୁରୋଧକୁ ଉପେକ୍ଷା କରିଥିବାରୁ ଆଦିମାତା କର୍ତ୍ତୃକ ପ୍ରଦତ୍ତ ଅଭିଶାପକୁ ସମ୍ମାନ ଦେଇ ହିନ୍ଦୁ ସଂସ୍କୃତିରେ ସୃଷ୍ଟିକର୍ତ୍ତା ବ୍ରହ୍ମାଙ୍କୁ ପ୍ରାୟ ଅପୂଜ୍ୟ କରାଯାଇଛି । ମାତ୍ର ଶ୍ରୀଜଗନ୍ନାଥ ସଂସ୍କୃତି ଏତାଦୃଶ ଅନୀତିର ପ୍ରତିବାଦରେ ସ୍ୱରୋତ୍ତୋଳନ କରି ବହ୍ମାହରଣ ଦୋଷରେ ଅଭିଯୁକ୍ତ ବ୍ରହ୍ମାଙ୍କୁ ସୁଭଦ୍ରା ରୂପରେ ଶ୍ରୀଜଗନ୍ନାଥ ଓ ଶ୍ରୀବଳଭଦ୍ର ଦୁଇଭାଇଙ୍କ ମଧ୍ୟବର୍ତ୍ତୀ ସ୍ଥାନରେ ଉପାସନାର ସୁଯୋଗ ପ୍ରଦାନ କରିଛି । ଅତଏବ ବ୍ରହ୍ମୋପାସନା ଅନୀତି

ବିରୁଦ୍ଧରେ ଶ୍ରୀଜଗନ୍ନାଥ ସଂସ୍କୃତିର ଏକ ବଳିଷ୍ଠ ଆହ୍ୱାନ ।

ଶକ୍ତି ସର୍ବଦା ଓ ସର୍ବଥା ଶକ୍ତିମୁକ୍ତା । ମାତ୍ର ଶ୍ରୀକ୍ଷେତ୍ରରେ ଦଶହରା ଅବସରରେ ଶକ୍ତି ସ୍ୱରୂପିଣୀ (ବିମଳା) ଦୁର୍ଗାଙ୍କ ସହିତ ମାଧବ (ଶ୍ରୀଜଗନ୍ନାଥ) ଏକତ୍ର ଉପାସିତ ହୋଇଥାନ୍ତି । ଦୁର୍ଗାମାଧବ ଉପାସନା ସଦୃଶ ସାଂସ୍କୃତିକ ବୈଶିଷ୍ଟ୍ୟ ଅନ୍ୟ କୌଣସି ଆଧ୍ୟାତ୍ମିକ ଚେତନାରେ ଅନୁପଲବ୍ଧ । ପୁନଶ୍ଚ ପ୍ରତ୍ୟେକ ଶକ୍ତିପୀଠରେ ଶକ୍ତିଙ୍କ ସହିତ ଶିବ ଭୈରବ ରୂପେ ଉପାସିତ । ମାତ୍ର ଶ୍ରୀକ୍ଷେତ୍ରରେ "ବିମଳା ଭୈରବୀ ଯତ୍ର ଜଗନ୍ନାଥସ୍ତୁ ଭୈରବଃ ।" ଏତାଦୃଶ ବ୍ୟତୀକ୍ରମ ମଧ୍ୟ ଦେଇ ଶ୍ରୀଜଗନ୍ନାଥ ସଂସ୍କୃତିର ସ୍ୱାତନ୍ତ୍ର୍ୟ ହିଁ ଜନମାନସରେ ଗଭୀର ରେଖାପାତ କରିଥାଏ ।

ଭାରତର ଚତୁର୍ଦ୍ଦିଗରେ ପ୍ରତିଷ୍ଠିତ ଚତୁର୍ଦ୍ଧାମ ମଧ୍ୟରୁ କେବଳ ଉଚ୍ଛିଷ୍ଟ ପୀଠ ଶ୍ରୀକ୍ଷେତ୍ରରେ କ୍ଷେତ୍ରାଧିପତିଙ୍କୁ ସଙ୍କୁଡ଼ି ଭୋଗ ଲାଗି ହେଉଥାଏ । ଏହାହିଁ ଶ୍ରୀଜଗନ୍ନାଥ ଉପାସନାର ବିଶେଷତ୍ୱ । ଅନ୍ୟତ୍ର ଭୋଗ ନିମନ୍ତେ ଅଭିପ୍ରେତ ବସ୍ତୁକୁ ଅମୁଣିହା କୁହ ଯାଏ ଓ ଭୋଗ ଲାଗିପରେ ତାହା ସାଧାରଣତଃ ପ୍ରସାଦରେ ପରିଣତ ହୋଇଥାଏ । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥ ଉପାସନାରେ ଉଲ୍ଲେଖ-ନୀୟ ବୈଶିଷ୍ଟ୍ୟ ପରିଦୃଷ୍ଟ ହୋଇଥାଏ । ଶ୍ରୀଜଗନ୍ନାଥଙ୍କୁ ଅର୍ପିତ ବସ୍ତୁ ବିସର୍ଜନ ପୂର୍ବରୁ ନୈବେଦ୍ୟ ଓ ବିସର୍ଜନ ପରେ ନିର୍ମାଲ୍ୟରେ ପରିଣତ ହୁଏ । ଶ୍ରୀଜୀଉଙ୍କୁ ଉତ୍ସର୍ଗୀକୃତ ନୈବେଦ୍ୟ ମା' ବିମଳାଙ୍କୁ ପୁନଃ ସମର୍ପିତ ହେବା ପରେ ତାହା ମା' ପ୍ରସାଦ ବା ମହାପ୍ରସାଦ ପଦବାଚ୍ୟ ହୋଇଥାଏ । ହିନ୍ଦୁ ଜଗତରେ ଉପାସିତ ତେତିଶି କୋଟି ଦେବଦେବୀଙ୍କ ମଧ୍ୟରୁ କାହାରି ପ୍ରସାଦ ମହାପ୍ରସାଦ ରୂପେ ପ୍ରାଧାନ୍ୟ ଲାଭ କରିନାହିଁ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦକୁ ଯେତେବେଳେ କେବଳ ଭାବ ସହକାରେ ଗ୍ରହଣ କରଯାଏ ସେତେବେଳେ ତାହାହିଁ ହୁଏ କୈବଲ୍ୟ । ଶ୍ରୀଜଗନ୍ନାଥଙ୍କ ମହାପ୍ରସାଦ ବ୍ୟତୀତ ଅନ୍ୟକୌଣସି ଦେବଦେବୀଙ୍କ ପ୍ରସାଦ ଏକାଦିକ୍ରମେ ନିର୍ମାଲ୍ୟ ଓ କୈବଲ୍ୟର ମାନ୍ୟତା ପ୍ରାପ୍ତ ହୁଏ ନାହିଁ । କୌଣସି କୌଣସି ଦେବଦେବୀଙ୍କ ପ୍ରସାଦ ସେବନ ପାଇଁ ଭିନ୍ନ ଧର୍ମ ସମ୍ପ୍ରଦାୟର ଲୋକମାନେ ହୁଏତ ଅନିଚ୍ଛା ପ୍ରଦର୍ଶନ କରିଥାନ୍ତି । ମାତ୍ର ଶ୍ରୀଜଗନ୍ନାଥ ମହାପ୍ରସାଦ ସେବନ ସମୟରେ ଅନୁରୂପ ମତ କେହି ପୋଷଣ କରନ୍ତି ନାହିଁ । ସର୍ବୋପରି ଭାରତବର୍ଷର ସବୁ ଦେବଦେବୀଙ୍କୁ ଶ୍ରୀଜଗନ୍ନାଥଙ୍କ ମାଳ ଓ ମହାପ୍ରସାଦ ଲାଗି କରଯାଇଥାଏ । ଏଣୁ ଶ୍ରୀଜୀଉଙ୍କୁ ନିବେଦିତ ଭୋଗକୁ

ମହାପ୍ରସାଦ ରୂପେ ପ୍ରାଧାନ୍ୟ ଦେବା ଯଥାର୍ଥ ନୁହେଁ କି ? ଶ୍ରୀମନ୍ଦିରରେ ପ୍ରତ୍ୟହ ଷାଠିଏ ପଉଟି ପରିମାଣର ଛପନ ପ୍ରକାର ଭୋଜ୍ୟଦ୍ରବ୍ୟ ଶ୍ରୀଜୀଉଙ୍କ ନିମିତ୍ତ ପ୍ରସ୍ତୁତ ହୋଇଥାଏ । ପୃଥିବୀରେ ଏପରି କୌଣସି ଅତ୍ୟାଧୁନିକ ପାକଶାଳା ବା ଭୋଜନାଳୟ ନାହିଁ ଯେଉଁଠାରେ କି ଶ୍ରୀମନ୍ଦିର ସଦୃଶ ପ୍ରତ୍ୟହ ଲକ୍ଷ ଲକ୍ଷ ଲୋକଙ୍କ ପାଇଁ ଏତେ ପ୍ରକାର ରୁଚିପୂର୍ଣ୍ଣ ଭୋଜନ ତଥା ସୁମିଷ୍ଟ ଜଳଖିଆ ବିଶେଷତଃ ଋତୁ ଉପଯୋଗୀ ବିଭିନ୍ନ ଖାଦ୍ୟ ସାମଗ୍ରୀ ପ୍ରସ୍ତୁତ ହୋଇଥାଏ ।

ଭାରତରେ ଉପାସିତ ବିଭିନ୍ନ ଦେବଦେବୀଙ୍କ ମଧ୍ୟରେ ଶ୍ରୀଜଗନ୍ନାଥ କେବଳ ବଡଠାକୁର ରୂପେ ପରିଚିତ । ସେ ଏକମାତ୍ର ବଡ ନୁହନ୍ତି, ତାଙ୍କର ସାନ୍ନିଧ୍ୟ ଓ ସାମୀପ୍ୟ ଲାଭ କରି ଶ୍ରୀଜଗନ୍ନାଥ ଚେତନାରେ ସବୁକିଛି ହିଁ ବଡ ବୋଲି ବିବେଚିତ ହୋଇଅଛି । ବଡ ଦେଉଳରେ ବିଜେ ବଡଠାକୁରଙ୍କ ବଡ ନାଁ । କେବଳ ତାଙ୍କର ବଡପଣ ନୁହେଁ, ଛପନ ପଉଟି ବଡ ଭୋଗରେ ତାଙ୍କର ମଣୋହି, ବାରହାତ ବଡ ଧନ୍ତାମାଳରେ ତାଙ୍କର ବଡସିଂହାର ବେଶ । ସେବକ ତାଙ୍କର ବଡପଣ୍ଡା, ରଥଦାଣ୍ଡ ତାଙ୍କର ବଡଦାଣ୍ଡ । ସର୍ବୋପରି ଏ ସମଗ୍ର ଜଗତ ତାଙ୍କର ବଡ ପରିବାର । ଏହା ହିଁ ଶ୍ରୀଜଗନ୍ନାଥ ସଂସ୍କୃତିର ମହାନ ବୈଶିଷ୍ଟ୍ୟ ।

ଭାରତବର୍ଷ ଅଗଣିତ ଦେବଦେବୀଙ୍କର ଲୀଳାଭୂମି । ହେଲେ ଶ୍ରୀଜଗନ୍ନାଥଙ୍କ ବ୍ୟତୀତ ଅନ୍ୟକେହି 'ପତିତପାବନ' ରୂପେ ଉପାସିତ ହୁଅନ୍ତି ନାହିଁ । ଚତୁର୍ଦ୍ଧାମୂର୍ତ୍ତି ଗହଣରେ ସେ ପତିତପାବନ ନୁହନ୍ତି, ମାତ୍ର ଏକକ ଅବସ୍ଥାନ କାଳରେ ତାଙ୍କୁ ପତିତପାବନ ରୂପେ ପ୍ରାଧାନ୍ୟ ଅର୍ପିତ ହୋଇଥାଏ । ଶ୍ରୀମନ୍ଦିରର ରୀତିନୀତିର ଶୁଦ୍ଧତା ପ୍ରତ୍ୟେକଙ୍କୁ ବିସ୍ମିତ କରିଥାଏ । ବେଢ଼ା ପରିସରକୁ ପ୍ରଦୂଷଣମୁକ୍ତ ରଖିବା ନିମିତ୍ତ 'ଅଶୌଚ୍ୟ ତାଲିକାସ୍ଥ ନିତ୍ୟ ଦର୍ଶନାକାଙ୍କ୍ଷୀ' ମାନଙ୍କୁ ଶ୍ରୀମନ୍ଦିର ପ୍ରବେଶ ନିଷିଦ୍ଧ ହୋଇଅଛି । ସେହିମାନଙ୍କୁ ଦର୍ଶନ ଦେବା ଉଦ୍ଦେଶ୍ୟରେ ହିଁ ସିଂହଦ୍ୱାର ଗୁମୁଟ ମଧ୍ୟରେ ଶ୍ରୀଜଗନ୍ନାଥ ପତିତପାବନ ରୂପେ ବିରାଜିତ । ଦର୍ଶନଲିପ୍ସୁ ଭକ୍ତଗଣ ସିଂହଦ୍ୱାର ପୁରୋଭାଗରେ ଅବସ୍ଥାପିତ ଅରୁଣସ୍ତମ୍ଭ ସମୀପରେ ଦଣ୍ଡାୟମାନ ହୋଇ ପତିତପାବନଙ୍କୁ ଦର୍ଶନ କରିବାର ସୌଭାଗ୍ୟଲାଭ କରିଥାନ୍ତି । ଏଥିପାଇଁ ଯଥାର୍ଥରେ କୁହାଯାଇଛି—

"ପତିତପାବନ ମୂର୍ତ୍ତି ସିଂହଦ୍ୱାର ପାଶ
ଦର୍ଶନେ ଚଣ୍ଡାଳ ପ୍ରାପ୍ତ ହେବେ ସ୍ୱର୍ଗବାସ ।।"

'ମାଦଳାପାଞ୍ଜି'ର ରାଜଭୋଗ ବିବରଣୀ ଅନୁସାରେ ଦ୍ୱିତୀୟ ରାମଚନ୍ଦ୍ର ଦେବ ତତ୍କାଳୀନ ନାଏବ ନାଜିମ୍ ସୁଜାଖାଁଙ୍କ କନ୍ୟା ସହିତ ପ୍ରଣୟ ପାଶରେ ଆବଦ୍ଧ ହୋଇ ହାଫିଜ୍ କାଦାର ବେଗ୍ ନାମରେ ପରିଚିତ ହେବା ପରେ ତାଙ୍କୁ ଶ୍ରୀମନ୍ଦିର ପ୍ରବେଶ ବାରଣ କରାଯାଇଥିଲା । ଶ୍ରୀଜଗନ୍ନାଥ-ଭକ୍ତ ଗଜପତିଙ୍କ ଅନୁରୋଧ କ୍ରମେ ସିଂହଦ୍ୱାର ଗୁମୁଟ ମଧ୍ୟରେ ପତିତପାବନ ବିଗ୍ରହ ସ୍ଥାପନ କରାଯାଇଥିଲା । ବାସ୍ତବରେ ଅସ୍ପୃଶ୍ୟ ତଥା ଦୁରାରୋଗ୍ୟ ବ୍ୟାଧିଗ୍ରସ୍ତ ବ୍ୟକ୍ତି ଶ୍ରୀଜଗନ୍ନାଥ ଦର୍ଶନରୁ ବଞ୍ଚିତ ହୋଇ ଶ୍ରୀଜଗନ୍ନାଥ ଧର୍ମପ୍ରତି ପରାଙ୍ମୁଖ ପ୍ରଦର୍ଶନ ପୂର୍ବକ ବିଧର୍ମୀମାନଙ୍କ ପ୍ରରୋଚନାରେ ଧର୍ମାନ୍ତର ଗ୍ରହଣ ପାଇଁ ଇଚ୍ଛାପୋଷଣ କରିବା ସ୍ୱାଭାବିକ୍ । ହିନ୍ଦୁଧର୍ମରେ ଉପୁଜିଥିବା ଏତାଦୃଶ ସମ୍ଭାବ୍ୟ ସମସ୍ୟାକୁ ପ୍ରତିହତ କରି ସେମାନଙ୍କୁ ଦର୍ଶନ ସୁଯୋଗ ପ୍ରଦାନ କରିବା ନିମିତ୍ତ ପତିତପାବନ ମୂର୍ତ୍ତିର ପରିକଳ୍ପନା ଅବଶ୍ୟମ୍ଭାବୀ ମନେହୋଇଥାଏ । ଶ୍ରୀଜଗନ୍ନାଥ ସତେ ଯେପରିକି ଦୁଃଖ ଦୁର୍ଦ୍ଦଶାଗ୍ରସ୍ତ ସକଳ ପୀଡିତ ମାନବର ଆସ୍ଥା ଓ ଆଶ୍ୱାସନାର କେନ୍ଦ୍ରବିନ୍ଦୁ । ପାପୀମାନଙ୍କର ପାପ ପ୍ରକ୍ଷାଳନ କରି କରି ଗଙ୍ଗା ହୁଏତ ଦୂଷିତ ହୋଇଯାଉଛି, ମାତ୍ର ପତିତମାନଙ୍କୁ ପବିତ୍ର କରି କରି ଶ୍ରୀଜଗନ୍ନାଥ ପତିତପାବନ ପାଲଟି ଯାଇଛନ୍ତି । ପାପୀକୁ ପବିତ୍ର କରନ୍ତି ବୋଲି ପତିତପାବନ ନାମ ତାଙ୍କର ଯଥାର୍ଥ । ତାଙ୍କର ମହାପ୍ରସାଦ ପବିତ୍ର ଖାଦ୍ୟ ଯାହା ସେବନ ଫଳରେ ପାପୀ ପରିତ୍ରାଣ ଲାଭକରେ । ଦେବତାର ନାମ ଓ ତାହାର ଭୋଗରେ ଏତାଦୃଶ ସାର୍ବଜନୀନ କଲ୍ୟାଣର ପରିକଳ୍ପନା ଅନ୍ୟାନ୍ୟ ଦେବ ବାଦରେ ଦୁର୍ଲ୍ଲଭ । କେବଳ ସେତିକି ନୁହେଁ, ବିଭିନ୍ନ କାମନା ପୋଷଣ କରି ଭକ୍ତ ତା'ର ଇପ୍ସିତ ଉପାସ୍ୟ ନିକଟକୁ ଯାଇଥାଏ । ମାତ୍ର ଶ୍ରୀଜଗନ୍ନାଥ ଏହାର ଏକ ବ୍ୟତିକ୍ରମ । ସେ ସ୍ୱୟଂ ପତିତତାରଣ ନିମିତ୍ତ ରତ୍ନସିଂହାସନ ପରିତ୍ୟାଗ ପୂର୍ବକ ବର୍ଷମଧ୍ୟରେ ଦୁଇଥର ଭକ୍ତ ଗହଣକୁ ଆସିଥାନ୍ତି । ଏହି ପ୍ରସଙ୍ଗରେ କବିସମ୍ରାଟ ଉପେନ୍ଦ୍ରଭଞ୍ଜ ସ୍ୱୀୟକୃତି 'କୋଟି ବ୍ରହ୍ମାଣ୍ଡ ସୁନ୍ଦରୀ'ରେ ଅବତାରଣା କରିଛନ୍ତି ଯେ—

"ସ୍ନାନ ଶ୍ରୀଗୁଣ୍ଡିଚ୍ଚ ବେନି ସ୍ୱୟଂଲୀଳା ଯା'ର
ପତିତପାବନ ଅର୍ଥେ ପ୍ରାସାଦୁଁ ବାହାର ।।"

ହିନ୍ଦୁ ଉପାସ୍ୟ ଯଥା ମହାପ୍ରଭୁ ଲିଙ୍ଗରାଜ ଓ ଦେବୀ ବିରଜାଙ୍କ ଉଦ୍ଦେଶ୍ୟରେ ଅନୁଷ୍ଠିତ ରଥଯାତ୍ରାରେ ସମ୍ପୃକ୍ତ ଦେବଦେବୀ ମାନେ ସ୍ୱୟଂ ଯାତ୍ରା ନକରି ସେମାନଙ୍କର ପ୍ରତିନିଧି ଠାକୁର ରୂପେ ଅର୍ଚ୍ଚାପ୍ରତିମା (ଚଳନ୍ତି ପ୍ରତିମା) ଯାତ୍ରା

କରିଥାନ୍ତି । କେବଳ ଶ୍ରୀଜଗନ୍ନାଥ ଏକମାତ୍ର ଦେବତା ଯିଏକି ମଞ୍ଜାସ୍ନାନ ଓ ସୁପଞ୍ଚ ଶ୍ରୀଗୁଣ୍ଡିଚ୍ଚ ମହୋତ୍ସବରେ ଭକ୍ତର ପ୍ରତ୍ୟାକ୍ଷୀଭୂତ ହୋଇ ବେନି ଭୁଜ ତୋଳି ଶରଣ ଯାଚିଥାନ୍ତି । "ଶ୍ରବକୁ ନିକଟ ଅଶ୍ରବେ ଅଭେଟ"—ଏ ବାକ୍ୟ-ବିଗ୍ରହ ତାଙ୍କ ପାଖରେ ମୂଲ୍ୟହୀନ । ସେ ଶ୍ରବ-ଅଶ୍ରବ ସମସ୍ତଙ୍କୁ ହିଁ ସମାନ ସାମୀପ୍ୟ ପ୍ରଦାନ କରିଥାନ୍ତି । ଭକ୍ତର ସେ ଏକାନ୍ତ ନିଜର ମାତ୍ର ପଣ୍ଡିତମନ୍ୟଙ୍କ ନିମିତ୍ତ ଏକାନ୍ତ ଦୁର୍ବୋଧ୍ୟ ସେ । ବାସ୍ତବରେ ଶ୍ରୀଜଗନ୍ନାଥ ସଂସ୍କୃତିରେ ଏହାହିଁ ଏକ ମହନୀୟ ଆଦର୍ଶ ।

କେବଳ ଶ୍ରୀଜଗନ୍ନାଥ ପତିତପାବନ ନୁହନ୍ତି କି ତାଙ୍କର ଯାତ୍ରା ପତିତପାବନ ଯାତ୍ରା ନୁହେଁ । ତତ୍ ସହିତ ଶ୍ରୀମନ୍ଦିରର ନୀଳଚକ୍ର ଶୀର୍ଷରେ କରୁଣା, କ୍ଷମା ଓ ପ୍ରେମର ସ୍ମାରକୀ ବନ୍ଧନକରି ଉଡ୍ଡୀୟମାନ ଧ୍ୱଜା ହିଁ ପତିତପାବନ ବାନା ନାମରେ ସର୍ବଜନ ବିଦିତ । ଏହି ବାନା ପାଖରେ ମାନବର ଗର୍ବ ଆନୁଗତ୍ୟରେ ରୂପାନ୍ତରିତ ହୋଇଥିବାରୁ ଏହାର ଅନ୍ୟନାମ ଗର୍ବଗଞ୍ଜନବାନା ଅଟେ । ପ୍ରୋକ୍ତ ପତିତ-ପାବନ ବାନା ହିଁ ବିଶ୍ୱକୁ ଶ୍ରୀଜଗନ୍ନାଥ ସଂସ୍କୃତିର ଏକ ମହତ ଅବଦାନ । ଗୀର୍ଜା, ମସଜିଦ, ଶାନ୍ତିସ୍ତୂପ ପ୍ରଭୃତି ଧର୍ମ ମନ୍ଦିର ମାନଙ୍କରେ ପତାକା ଉଡ଼ିବାର ଦେଖାଯାଏ ନାହିଁ । ମାତ୍ର ହିନ୍ଦୁ ମନ୍ଦିର ଚୂଡ଼ାରେ ଧ୍ୱଜା ଉଡ଼ିବା ଏକ ପରମ୍ପରା ଅଟେ । ତାହା ଜାତିର ଆଧ୍ୟାତ୍ମିକତା ତଥା ସାଂସ୍କୃତିକ ଐତିହ୍ୟ ପ୍ରଚାର କରିଥାଏ । ହିନ୍ଦୁ ରାଜାମାନେ ରାଜ୍ୟଜୟ ପୂର୍ବକ ପରାଭୂତ ରାଜ୍ୟରୁ ସଂଗୃହିତ ଅର୍ଥରେ ମନ୍ଦିର ସଦୃଶ ଏକ ବିଶାଳ କୀର୍ତ୍ତିସ୍ତମ୍ଭ ନିର୍ମାଣ କରି ତାର ଶୀର୍ଷରେ ବିଜୟ ବୈଜୟନ୍ତି ସ୍ଥାପନ କରୁଥିଲେ । ବିଜୟ କେତନ ପ୍ରତ୍ୟେକ ସ୍ୱାଧୀନ ତଥା ସାର୍ବଭୌମ ରାଷ୍ଟ୍ରର ଶୌର୍ଯ୍ୟ, ବୀର୍ଯ୍ୟ, ପ୍ରାଚୁର୍ଯ୍ୟ, ଗର୍ବ ଓ ଗୌରବର ସ୍ମାରକ । ଶ୍ରୀଜଗନ୍ନାଥ ସଂସ୍କୃତିରୁ ହିଁ ପ୍ରେରଣା ଲାଭ କରି ଆଜି ପ୍ରତ୍ୟେକ ସ୍ୱାଧୀନରାଷ୍ଟ୍ରରେ ଜାତୀୟ ପତାକା ଉଡ୍ଡୀୟମାନ । ବାସ୍ତବରେ ଏହି ମହନୀୟ ଆଦର୍ଶ ହିଁ ଶ୍ରୀଜଗନ୍ନାଥ ସଂସ୍କୃତିର ଉଲ୍ଲେଖନୀୟ ବୈଶିଷ୍ଟ୍ୟ ।

ଶ୍ରୀମଦ୍ଭାଗବତ ବର୍ଣ୍ଣିତ ତଥ୍ୟାନୁସାରେ ଦାରୁ, ପଥର, ଲୌହ, ଚନ୍ଦନ, ଧାତୁ, ବାଲୁକା, ମୃଣ୍ମୟ ଓ ମଣି ପ୍ରଭୃତି ଅଷ୍ଟବିଧ ଉପାଦାନରେ ପ୍ରତିମା ନିର୍ମାଣ କରଯାଇ ପୂଜା କରଯାଇଥାଏ । ହିନ୍ଦୁ ଦର୍ଶନରେ ଧାତୁ କିମ୍ବା ପ୍ରସ୍ତର ନିର୍ମିତ ବିଗ୍ରହମାନଙ୍କୁ ଅବିନାଶୀ ବା ଚିରସ୍ଥାୟୀ ବୋଲି ଗୁରୁତ୍ୱ ଅର୍ପିତ ହୋଇଥିବା ସ୍ଥଳେ ଦାରୁନିର୍ମିତ ବିଗ୍ରହ ନଶ୍ୱର ବା କ୍ଷୟଶୀଳ ବୋଲି ବିଚାର କରଯାଇଥାଏ । ତେଣୁ ଦାରୁଦେବତା ଶ୍ରୀଜଗନ୍ନାଥଙ୍କ ଶରୀର ପରିବର୍ତ୍ତନର ଆବଶ୍ୟକତା ଉପଲବ୍ଧ

ହୋଇଥାଏ । ଭାରତୀୟ ଉପାସନା ପରମ୍ପରାନୁଯାରେ ଦେବତାମାନେ ବିଭିନ୍ନ ଅବତାରରେ ଧରାରେ ଅବତୀର୍ଣ୍ଣ ହୋଇଥିବାରୁ ସାଧାରଣତଃ ବାମନଜନ୍ମ, ନୃସିଂହଜନ୍ମ, ରାମଜନ୍ମ କୃଷ୍ଣଜନ୍ମ ଓ ବୁଦ୍ଧଜନ୍ମ ପ୍ରଭୃତି ଜୟନ୍ତୀ ଉତ୍ସବ ପାଳିତ ହୋଇଥାଏ । ଦେବତାମାନେ ଯେହେତୁ ଅମର ଓ ତାଙ୍କୁ ମୃତ୍ୟୁଗ୍ରାସ କରେ ନାହିଁ । ତେଣୁ ତାଙ୍କର ମୃତ୍ୟୁତ୍ସବ ପାଳିତ ହୁଏ ନାହିଁ । ଏ ଦୃଷ୍ଟିରୁ ଶ୍ରୀଜଗନ୍ନାଥ ଏକ ବ୍ୟତୀକ୍ରମ । କାରଣ "ମର୍ତ୍ତ୍ୟ ମଣ୍ଡଳେ ଦେହ ବହି । ଦେବତା ହୋଇଲେ ମରଇ ।।" ଏହି ଭାଗବତୀୟ ସିଦ୍ଧାନ୍ତ କେବଳ ଶ୍ରୀଜଗନ୍ନାଥଙ୍କ ପ୍ରତି ପ୍ରଯୁଜ୍ୟ । ଯୁଗ୍ମ ଆଷାଢ ବିଶିଷ୍ଟ ପୁରୁଷୋତ୍ତମ ମାସରେ ନବକଳେବର ଅବସରରେ ଲୌକିକ ଦେବତା ଶ୍ରୀଜଗନ୍ନାଥଙ୍କ ପୁରାତନ ବିଗ୍ରହରୁ ଅଲୌକିକ ବ୍ରହ୍ମପଦାର୍ଥ ଅପସାରଣ କରି ନିଆଗଲା ପରେ 'ଜାତିସ୍ୟ ହି ମୃତ୍ୟୁ ଧ୍ରୁବ' ନିଷ୍ଠୁର ସତ୍ୟକୁ ସମ୍ମାନ ଦେଇ ତାଙ୍କ ମୃତ୍ୟୁକୁ ସ୍ୱୀକାର କରାଯାଇଥାଏ । ଜନ୍ମାନ୍ତରବାଦ ଭାରତୀୟ ସଂସ୍କୃତିର ଏକ ବଳିଷ୍ଠ ପୃଷ୍ଠଭୂମି । ଏହାର ତାତ୍ପର୍ଯ୍ୟ ହେଉଛି ମୃତ୍ୟୁ ପରେ ପୁନର୍ଜନ୍ମ । ଭାରତୀୟ ଆଧ୍ୟାତ୍ମିକ ଚେତନାରେ ଆତ୍ମା ଅବିନାଶୀ; ଏହା ସର୍ବଜନବିଦିତ । ଆମକୁ ଯାହା ମୃତ୍ୟୁବୋଲି ପ୍ରତୀୟମାନ ହୁଏ; ତାହା କେବଳ ଏକ ଭୌତିକ ଶରୀରର ଅବସାନ ମାତ୍ର । କିନ୍ତୁ ଆତ୍ମାର ମୃତ୍ୟୁ ନାହିଁ । ସେ ଶାଶ୍ୱତ, ଅବିନଶ୍ୱର । ଏହି ସତ୍ୟ ଶ୍ରୀଜଗନ୍ନାଥ ସଂସ୍କୃତିରେ ପ୍ରତିପାଦିତ । କାରଣ ନବକଳେବର ସମୟରେ ଶ୍ରୀଜଗନ୍ନାଥଙ୍କ ଦାରବ ଶରୀର ପରିବର୍ତ୍ତନ କରାଯାଉଥିବା ସ୍ଥଳେ ଆତ୍ମାରୂପୀ ବ୍ରହ୍ମବସ୍ତୁ ଅପରିବର୍ତ୍ତି ରହିଥାଏ ।

ପୃଥିବୀରେ ଅନେକ ଦେବତା କଳ୍ପନା କରାଯାଇଥିଲେ ହେଁ ଶ୍ରୀଜଗନ୍ନାଥଙ୍କ ସଦୃଶ କାହାରିଠାରେ ବ୍ରହ୍ମ ଆରୋପଣ କରାଯାଇ ନଥାଏ । ବିଶେଷତଃ ବିଗ୍ରହକୁ ଯେତେବେଳେ ରହସ୍ୟ ବିଜଡିତ କରି ଦିଆଯାଏ, ମନୁଷ୍ୟ ଆକୃତିର ବିଗ୍ରହ ସେତେବେଳେ ସ୍ୱତଃ ଦେବତାରେ ପରିଣତ ହୋଇଥାଏ । ଏହି ପରିପ୍ରେକ୍ଷୀରେ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମବସ୍ତୁ ଅଦ୍ୟାବଧି ଏକ ରହସ୍ୟମୟ ବସ୍ତୁ ରୂପେ ପରିକଳ୍ପିତ ହେଉଅଛି । ଆତ୍ମା ଯେପରି ଅନୁପଲଭ୍ୟ ଓ ଅକଳ୍ପନୀୟ ଶ୍ରୀଜଗନ୍ନାଥଙ୍କ ବ୍ରହ୍ମପଦାର୍ଥ ସେହିପରି ଏକ ଅନୁଦ୍‌ଘାଟିତ ରହସ୍ୟମୟସତ୍ତା ହିସାବରେ ସମସ୍ତଙ୍କର ଚିନ୍ତା ରାଜ୍ୟରେ ଘୋର ଉଦ୍‌ବେଳନ ସୃଷ୍ଟି କରିପାରିଛି । ତାହା ଇନ୍ଦ୍ରନୀଳମଣି ନିର୍ମିତ ନୀଳମାଧବ ବିଗ୍ରହ, ଶ୍ରୀକୃଷ୍ଣଙ୍କ ଅଦାହ୍ୟ ନାଭିକମଳ, ପୂର୍ଣ୍ଣବ୍ରହ୍ମ ବିଶିଷ୍ଟ ଶ୍ରୀକୃଷ୍ଣଙ୍କ ପଞ୍ଚଭୂତାତ୍ମକ ଶରୀରସ୍ଥ ଏକ ମଣିବିଶେଷ, ଇନ୍ଦ୍ରଦ୍ୟୁମ୍ନ କର୍ତ୍ତୃକ ବେଦବର୍ଣ୍ଣିତ ପ୍ଳବମାନ ଅପୁରୁଷେୟ ଦାରୁନିର୍ମିତ ପ୍ରଥମ ବିଗ୍ରହର

ଅଂଶାବଶେଷ, ଚନ୍ଦନସିକ୍ତ ତୁଳସୀ ସ୍ତବକ, ଜୀବନ୍ତ ଶାଳଗ୍ରାମ, ଚୈତ୍ୟଶିଳା, ବୁଦ୍ଧଦନ୍ତ, ସ୍ୱର୍ଣ୍ଣନିର୍ମିତ ଶୟନଠାକୁର, ତନ୍ତ୍ର ପ୍ରଭାବିତ ଅଷ୍ଟଧାତୁ ନିର୍ମିତ ଏକ ଯନ୍ତ୍ରଫଳକ, ପାରଦ ଆଧାରିତ ଏକ ଧାତବ ପେଟିକା କିମ୍ବା ଏକ ମୂଲ୍ୟବାନ ଆକର୍ଷଣୀୟ ମଣିଖଣ୍ଡ ବିଶେଷ ଯାହା ହେଉନା କାହିଁକି ନବକଳେବର ଉତ୍ସବରେ ପୁରାତନ ବିଗ୍ରହରୁ ସ୍ଥାନାନ୍ତରିତ କରାଇ କୋଇଲି ବୈକୁଣ୍ଠରେ ନିର୍ମିତ ନୂତନ ବିଗ୍ରହରେ ସ୍ଥାପିତ କରାଯାଇଥାଏ । ଉକ୍ତ ବ୍ରହ୍ମବସ୍ତୁ ଦାରୁ ନିର୍ମିତ ନଶ୍ୱର ଶରୀରରେ ଆତ୍ମା ସଦୃଶ ବିଦ୍ୟମାନ । ପୁରୁଷୋତ୍ତମ ମାସର ଆଷାଢ଼ ମଳ କୃଷ୍ଣ ଚତୁର୍ଦ୍ଦଶୀ ନିଶାର୍ଦ୍ଧରେ ନୂତନ ବିଗ୍ରହରେ ଚିରନ୍ତନ ବ୍ରହ୍ମ ପଦାର୍ଥକୁ ସ୍ଥାପନ କରାଗଲା ପରେ ନଶ୍ୱର ପୁରାତନ ବିଗ୍ରହଙ୍କୁ ଶ୍ରୀମନ୍ଦିର ବେଢା ପରିସରର ବାୟବ୍ୟ କୋଣସ୍ଥ ଦେବ ନିର୍ବାଣ ଭୂମି କୋଇଲି ବୈକୁଣ୍ଠରେ ସଂସ୍କାର କରାଯାଇଥାଏ । ନବକଳେବର ଓ ବ୍ରହ୍ମ ସଂସ୍ଥାପନ ପ୍ରକ୍ରିୟା ମାଧ୍ୟମରେ 'ବ୍ରହ୍ମ ସତ୍ୟ ଜଗନ୍ମିଥ୍ୟା' ଏହି ବାଣୀର ମହତ୍ତ୍ୱ ଉପଲବ୍ଧ ହେବା ସଙ୍ଗେ ସଙ୍ଗେ ଏହି କାର୍ଯ୍ୟାନୁଷ୍ଠାନ ମାଧ୍ୟମରେ ଶ୍ରୀଜଗନ୍ନାଥ ସଂସ୍କୃତିରେ ମୃତ୍ୟୁ ମଧ୍ୟଦେଇ ଅମୃତ ଚେତନା ପ୍ରକଟିତ ହୋଇଥାଏ । ଅର୍ଥାତ୍ ଏହି ସଂସ୍କୃତିରେ ଜଡ଼ଚୈତନ୍ୟାନୁଚିନ୍ତା ପ୍ରତିପାଦିତ । ଦାରୁରୂପୀ ଜଡ ବିଗ୍ରହରେ ବ୍ରହ୍ମବସ୍ତୁ ରୂପୀ ଚେତନଶୀଳ ଆତ୍ମା ଗର୍ଭିତ ହୋଇଥିବାରୁ ଶ୍ରୀଜଗନ୍ନାଥ ସଂସ୍କୃତି ଯଥାର୍ଥରେ ଦାରୁବ୍ରହ୍ମ ସଂସ୍କୃତିର ବୈଶିଷ୍ଟ୍ୟ ଲାଭକରିଛି ।

ଶ୍ରୀଜଗନ୍ନାଥ ସଂସ୍କୃତିରେ ଅନ୍ୟ ଏକ ବୈଶିଷ୍ଟ୍ୟ ନିହିତ ଯାହାକି ଅନ୍ୟକୌଣସି ଦେବବାଦରେ ଅନୁସୃତ ହୁଏ ନାହିଁ । ଶ୍ରୀଜଗନ୍ନାଥ ସ୍ୱୀୟ କ୍ରିୟାତ୍ମକ ଶକ୍ତି ଚକ୍ରରାଜ ସୁଦର୍ଶନଙ୍କୁ

"ପ୍ରାଚ୍ୟାଙ୍ଗୀରସ ପୀଠେଷ୍ଟ ଦକ୍ଷିଣେ କଣ୍ଡୁ ମନ୍ଦିରମ୍
ମାର୍କଣ୍ଡେୟ ଓ୍ୱେତରେଷ୍ଟ ଭୃଗୁ ଭାର୍ଗବୀ ସନ୍ନିଧିଃ ।।"

ବର୍ଷମଧ୍ୟରେ ଚାରିଥର ପଠାଇ ଅଙ୍ଗିରା, କଣ୍ଡୁ, ମାର୍କଣ୍ଡେୟ ଓ ଭୃଗୁ ଇତ୍ୟାଦି କୁଳଗୁରୁ ଚତୁଷ୍ଟୟଙ୍କ ତତ୍ତ୍ୱାବଧାନ କରିଥାନ୍ତି । ଜୈନ, ବୌଦ୍ଧ, ଖ୍ରୀଷ୍ଟିୟାନ ଓ ଇସ୍‌ଲାମୀ ସଂସ୍କୃତିର ଜଣେ ଜଣେ ନିର୍ଦ୍ଦିଷ୍ଟ ପ୍ରବର୍ତ୍ତକ ଅଛନ୍ତି; ଯେଉଁମାନେ କି ଏକ ଏକ ଐତିହାସିକ ଚରିତ୍ର । ମାତ୍ର କୌଣସି ନିର୍ଦ୍ଦିଷ୍ଟ ପ୍ରବକ୍ତାଙ୍କ ଦ୍ୱାରା ଶ୍ରୀଜଗନ୍ନାଥ ଧର୍ମଦର୍ଶନ ପ୍ରତିଷ୍ଠାଲାଭ କରି ନଥିବାରୁ ଶ୍ରୀଜଗନ୍ନାଥ କୌଣସି

ଧର୍ମ କୈନ୍ଦ୍ରିକ ଦେବତା ନୁହଁନ୍ତି ବରଂ ସେ ସର୍ବତୋଭାବେ ଏକ ସାଂସ୍କୃତିକ ଦେବତା ଅଟନ୍ତି । କୌଣସି ଏକ ଧର୍ମର ଉପାସ୍ୟଙ୍କୁ ଅନ୍ୟ ଧର୍ମର କୌଣସି ବ୍ୟକ୍ତି ହୁଏତ ପ୍ରାଧାନ୍ୟ ଦେଇ ନପାରେ । ମାତ୍ର ଶ୍ରୀଜଗନ୍ନାଥ ଏପରି ଏକ ସମନ୍ୱୟଧର୍ମୀ ଦେବତା ଯାହାଙ୍କୁ ସବୁ ଧର୍ମ ସମ୍ପ୍ରଦାୟର ଉପାସକମାନେ ନିର୍ବିବାଦରେ ଉପାସନା କରିଥାନ୍ତି । ପ୍ରୋକ୍ତ ପର୍ଯ୍ୟାଲୋଚନାରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଶ୍ରୀଜଗନ୍ନାଥ ସଂସ୍କୃତି ଯେପରି ଏକ ସ୍ୱତନ୍ତ୍ର ସଂସ୍କୃତି, ବିଶ୍ୱ ସଂସ୍କୃତିରେ ଏହାର ସ୍ୱାତନ୍ତ୍ର୍ୟ ମଧ୍ୟ ସେହିପରି ଅନବଦ୍ୟ । ତେଣୁ ବିଶ୍ୱରେ ବହୁଦେବଦେବୀ ଉପାସନାର ପ୍ରଚଳନ ଥିଲେ ମଧ୍ୟ ଶ୍ରୀଜଗନ୍ନାଥ ଉପାସନାହିଁ ପ୍ରାଧାନ୍ୟ ଲାଭକରିଅଛି ।

ଗବେଷକ
(ଶ୍ରୀଜଗନ୍ନାଥ ସଂସ୍କୃତି)
ନୂଆଗାଁ, ଭୁବନେଶ୍ୱର - ୨

# ଶ୍ରୀ ଜଗନ୍ନାଥଙ୍କ ବିଗ୍ରହ-ପ୍ରସଙ୍ଗ

ଶ୍ରୀ ଜଗବନ୍ଧୁ ପାଢ଼ୀ

ସୁପ୍ରସିଦ୍ଧ ଶ୍ରୀନୀଳାଚଳ କ୍ଷେତ୍ରରେ ଶ୍ରୀମନ୍ଦିରର ଅଭ୍ୟନ୍ତରରେ ଯେଉଁ ଚତୁର୍ଦ୍ଧାମୂର୍ତ୍ତି ଭଗବାନ୍ ପୂଜିତ ହେଉଛନ୍ତି, ତାଙ୍କର ସେହି ପ୍ରତି ବିଗ୍ରହଙ୍କର ନାମ ଶ୍ରୀଜଗନ୍ନାଥ, ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା ଓ ଶ୍ରୀସୁଦର୍ଶନ । ସେମାନଙ୍କ ମଧ୍ୟରୁ ଶ୍ରୀଜଗନ୍ନାଥ ଶ୍ରୀମନ୍ଦିରର ମୁଖ୍ୟ ଦେବତା । ବିଦ୍ୱାନମାନେ ତାହାଙ୍କୁ ଭଗବାନ ନାରାୟଣ, ପୁରୁଷୋତ୍ତମ ବା ବିଷ୍ଣୁଙ୍କର ସ୍ୱରୂପ ବୋଲି କହନ୍ତି । ଅଧୁନା ତ ହାଙ୍କୁ ଶ୍ରୀବିଷ୍ଣୁଙ୍କର ବିଧି ଅନୁସାରେ ହିଁ ପୂଜା କରାଯାଉଛି । ତାଙ୍କର ଅପର ନାମ ବାସୁଦେବ, ଅର୍ଥାତ୍ ବସୁଦେବଙ୍କର ପୁତ୍ର ଶ୍ରୀକୃଷ୍ଣ । ଶ୍ରୀକୃଷ୍ଣଙ୍କର ଚରିତ ବିଭିନ୍ନ ପୁରାଣ, ବିଶେଷତଃ ହରିବଂଶ, ବ୍ରହ୍ମବୈବର୍ତ୍ତ ପୁରାଣ ତଥା ଭାଗବତ ପୁରାଣରେ ବିସ୍ତାର ସହକାରେ ବର୍ଣ୍ଣିତ ହୋଇଅଛି । ଭାଗବତରେ ଶ୍ରୀବିଷ୍ଣୁଙ୍କର ନାନାବିଧ ଅବତାର ପ୍ରସଙ୍ଗରେ ଅନ୍ୟାନ୍ୟ ଅବତାର ସମୂହ ତାଙ୍କର କେତକ ବିଶିଷ୍ଟ କଳାଯୁକ୍ତ ହୋଇଥିବା ସ୍ଥଳେ ଶ୍ରୀକୃଷ୍ଣ ସଂପୂର୍ଣ୍ଣ ଷୋଡଶ-କଳାଯୁକ୍ତ ସ୍ୱୟଂ ଭଗବାନ ବୋଲି ଘୋଷଣା କରାଯାଇଛି[1] । ତେଣୁ ଶ୍ରୀନୀଳାଚଳ କ୍ଷେତ୍ରରେ ବିରାଜିତ ଶ୍ରୀଜଗନ୍ନାଥଙ୍କର ବିଗ୍ରହଙ୍କୁ ଶ୍ରୀକୃଷ୍ଣଙ୍କ ମନ୍ତ୍ର ବା ଗୋପାଳମନ୍ତ୍ରରେ ହିଁ ପୂଜା କରାଯାଏ । ନୀଳାଦ୍ରି ମହୋଦୟରେ ଉଲ୍ଲେଖ ଅଛି ଯେ ଯେତେବେଳେ ଶ୍ରୀଜଗନ୍ନାଥଙ୍କୁ ନୃସିଂହ ମନ୍ତ୍ର ଦ୍ୱାରା ପୂଜା କରିବାରେ ଅଶକ୍ତ ହେବ, ସେହି କାଳରେ ହିଁ ତାହାଙ୍କୁ ଗୋପାଳ ମନ୍ତ୍ରରେ ପୂଜା କରିବ[2] । ଭଗବାନ୍ ଶ୍ରୀକୃଷ୍ଣଙ୍କର ହିଁ ଗୋପାଳ ସ୍ୱରୂପ ପ୍ରସିଦ୍ଧ ଅଟେ । ସେହି ମନ୍ତ୍ରରେ ଭଗବାନ୍ଙ୍କୁ କୃଷ୍ଣ, ଗୋବିନ୍ଦ ଓ ଗୋପୀଜନ ବଲ୍ଲଭ ବୋଲି କୁହାଯାଇ ତାହାଦ୍ୱାରା ଭଗବାନଙ୍କର ଶ୍ରୀକୃଷ୍ଣାବତାରର ଗୋପାଳସ୍ୱରୂପ ହିଁ ପ୍ରକାଶିତ ହେଉଅଛି । କିନ୍ତୁ ସାକ୍ଷାତ ପରଂବ୍ରହ୍ମ ବା ପରମାତ୍ମା ସ୍ୱରୂପୀ ଭଗବାନ ବିଷ୍ଣୁଙ୍କର ରୂପ ବା ପ୍ରତିମା ତଥା ତାଙ୍କର ଅବତାର ଭୂତ ଶ୍ରୀକୃଷ୍ଣଙ୍କର ରୂପ ସମାନ ନୁହେଁ । ସାଧୁ-ସଂରକ୍ଷଣ ତଥା ଧର୍ମ ସଂସ୍ଥାପନରେ କୌଣସି ବିଶେଷ ଉଦ୍ଦେଶ୍ୟରେ ମୂର୍ତ୍ତି ନିମନ୍ତେ ହିଁ ଭଗବାନ ଅବତାର ଗ୍ରହଣ କରୁଥିବାର ଗୀତାରେ କଥିତ ହୋଇଛି[3] ।

ଶ୍ରୀବିଷ୍ଣୁଙ୍କର ପ୍ରତିମା ଲକ୍ଷଣ ସଂପର୍କରେ ମତ୍ସ୍ୟ ପୁରାଣରେ କଥିତ ଅଛି ଯେ ତାଙ୍କର ପ୍ରତିମା ଶାନ୍ତ, ହସ୍ତରେ ଶଙ୍ଖ, ଚକ୍ର, ଗଦା ତଥା ପଦ୍ମ ଧାରଣ-କାରୀ, ମସ୍ତକ ଛତ୍ରପରି ମଣ୍ଡଳାକାର, ଗ୍ରୀବା ଶଙ୍ଖ ପରି, ଚକ୍ଷୁ ଅତି ମନୋରମ, ନାସିକା ସାମାନ୍ୟ ତୁଙ୍ଗ, କର୍ଣ୍ଣ ଶୁକ୍ତିକା (ସିପ) ପରି ତଥା ଭୁଜ ଗୁରୁ (ବିଶାଳ) ତଥା ପ୍ରଶସ୍ତ ହେବା ଉଚିତ । ତାଙ୍କର ପ୍ରତିମା କେଉଁଠି ଅଷ୍ଟଭୁଜ, କେଉଁଠି ଚତୁର୍ଭୁଜ ହୋଇଥାଏ । କିନ୍ତୁ ଗୃହସ୍ଥ ମାନଙ୍କ ଗୃହରେ ଦ୍ୱିଭୁଜ ବିଷ୍ଣୁଙ୍କୁ ହିଁ ପ୍ରତିଷ୍ଠା କରାଯାଏ । ବିଷ୍ଣୁଙ୍କର ଏହି ରୂପ ଅତି ପ୍ରଶସ୍ତ ଓ ପ୍ରସିଦ୍ଧ ବୋଲି ତହିଁରେ ପ୍ରକାଶ କରାଯାଇଛି[4] । ପୁନଶ୍ଚ ତହିଁରେ ବର୍ଣ୍ଣିତ ହୋଇଥିବା କୃଷ୍ଣାବତାରର ବିଗ୍ରହ ସଂପର୍କରେ ମଧ୍ୟ କଥିତ ହୋଇଛି । ଯେ ସାଧାରଣତଃ ଚତୁର୍ଭୁଜ ବିଷ୍ଣୁଙ୍କର ଦକ୍ଷିଣ ହସ୍ତରେ ଗଦା ଓ ପଦ୍ମ ତଥା ବାମହସ୍ତରେ ଶଙ୍ଖ ଓ ଚକ୍ର ରହେ । କିନ୍ତୁ କୃଷ୍ଣାବତାରରେ ବାମହସ୍ତରେ ଗଦା ରଖିବା ହିଁ ପ୍ରଶସ୍ତ ଅଟେ । ଏପରି ସ୍ଥଳେ ଉଭୟ ଉପର ହସ୍ତରେ ଇଚ୍ଛାନୁସାରେ ଶଙ୍ଖ ଓ ଚକ୍ର ରଖାଯାଇପାରେ । ତାଙ୍କର ଦୁଇ ଚରଣ ତଳେ ପୃଥିବୀ ମୂର୍ତ୍ତି, ଦକ୍ଷିଣ ଭାଗରେ ପ୍ରଣାମରତ ଗରୁଡ ମୂର୍ତ୍ତି ତଥା ବାମ ପାର୍ଶ୍ୱରେ ପଦ୍ମହସ୍ତା ଲକ୍ଷ୍ମୀମୂର୍ତ୍ତି ରହିବା ଉଚିତ । ଦୁଇ ପାର୍ଶ୍ୱରେ ପଦ୍ମହସ୍ତା ଶ୍ରୀ ଓ ପୁଷ୍ଟି ମୂର୍ତ୍ତି ତଥା ସମ୍ମୁଖ ଭାଗରେ ଗରୁଡ ମୂର୍ତ୍ତିର ସ୍ଥାପନ ସମୃଦ୍ଧି କାମୀ ଯଜମାନଙ୍କ ପାଇଁ ଏକ ବିକଳ୍ପ ପ୍ରକାର ଅଟେ । ଉଭୟ କ୍ଷେତ୍ରରେ ଉର୍ଦ୍ଧ୍ୱଭାଗରେ ତୋରଣ ଓ ବିଦ୍ୟାଧର ମୂର୍ତ୍ତି; ଦେବ ଦୁନ୍ଦୁଭିଯୁକ୍ତ ଗନ୍ଧର୍ବ-ମିଥୁନ ମୂର୍ତ୍ତି, ପତ୍ର ଓ ଲତାର ଚିତ୍ର, ସିଂହ-ବ୍ୟାଘ୍ର ପ୍ରଭୃତିଙ୍କର ଚିତ୍ର, କଳ୍ପଲତାର ଚିତ୍ର ତଥା ଦେବତା-ମାନେ ସ୍ତୁତି କରୁଥିବାର ଚିତ୍ର ମଧ୍ୟ ଅଙ୍କିତ ହେବା ଆବଶ୍ୟକ[5] ।

ଏହି ପ୍ରକାରର ବିବରଣୀ ଅନ୍ୟାନ୍ୟ ପୁରାଣ ମାନଙ୍କରେ ମଧ୍ୟ ପ୍ରାପ୍ତ ହୁଏ । ଅଗ୍ନିପୁରାଣର ବର୍ଣ୍ଣନା ଅନୁସାରେ ଭଗବାନ ଶ୍ରୀବାସୁଦେବଙ୍କର ଦକ୍ଷିଣ-ହସ୍ତରେ ଉପରେ ଚକ୍ର ଓ ନିମ୍ନରେ ପଦ୍ମ ତଥା ବାମହସ୍ତରେ ଉପରେ ଶଙ୍ଖ, ତଳେ ଗଦା ନିର୍ମାଣ କରିବାକୁ ହେବ । ଏହା ବାସୁଦେବ ଶ୍ରୀକୃଷ୍ଣଙ୍କର ଚିହ୍ନ ଅଟେ । ତେଣୁ ଏହି ଚିହ୍ନ ତାହାଙ୍କର ସମସ୍ତ ପ୍ରତିମାରେ ରହିବା ଉଚିତ । ଭଗବାନଙ୍କ ନିକଟରେ ପଦ୍ମଧାରଣ କରିଥିବା ଲକ୍ଷ୍ମୀଦେବୀ ତଥା ବୀଣାଧାରଣ କରିଥିବା ପୁଷ୍ଟି ଦେବୀଙ୍କର ବିଗ୍ରହ ନିର୍ମିତ ହେବା ଉଚିତ୍ । ଏହା ବ୍ୟତୀତ ପ୍ରଭାମଣ୍ଡଳରେ ମାଳାଧର ଓ ବିଦ୍ୟାଧରଙ୍କ ବିଗ୍ରହ, ହସ୍ତୀ ପ୍ରଭୃତି ପଶୁଙ୍କ ବିଗ୍ରହ ତଥା ପାଦପୀଠ-ରେ କମଳାକୃତି ଆସନ ନିର୍ମିତ ହେବା ବିଧେୟ[6] । ଏହା ବ୍ୟତୀତ ନାରଦ ପୁରାଣ, ନରସିଂହ ପୁରାଣ ପ୍ରଭୃତି ପୁରାଣ ମାନଙ୍କରେ ମଧ୍ୟ ଶ୍ରୀବିଷ୍ଣୁ ମନ୍ଦିର

ନିର୍ମାଣ ପଦ୍ଧତି ତଥା ଶ୍ରୀବିଷ୍ଣୁ ପ୍ରତିମା ଗଠନ ପଦ୍ଧତି ଉକ୍ତ ହୋଇଅଛି । ଶାରଦା ତିଳକ ପ୍ରଭୃତି ବୈଷ୍ଣବ ତନ୍ତ୍ର ମାନଙ୍କରେ ମଧ୍ୟ ଶ୍ରୀବିଷ୍ଣୁଙ୍କର ପ୍ରତିମା ଲକ୍ଷଣ ପ୍ରଦତ୍ତ ହୋଇଅଛି । ବିଶେଷ ରୂପରେ ବରାହ ମିହିରକୃତ ବୃହତ ସଂହିତା, ରୂପମଣ୍ଡଳ, ଶିଳ୍ପରତ୍ନ, ବୈଖାନସ ଆଗମ, ପଞ୍ଚରାତ୍ର-ଆଗମ ପ୍ରଭୃତିମାନଙ୍କରେ ମଧ୍ୟ ଭଗବାନ ଶ୍ରୀବିଷ୍ଣୁଙ୍କର ପ୍ରତିମା-ଲକ୍ଷଣମାନ ଉପଲବ୍ଧ ହୁଅନ୍ତି ।

ଅତଏବ ଅତି ପ୍ରାଚୀନ କାଳରୁ ଭାରତ ବର୍ଷର ବିଭିନ୍ନ ଅଞ୍ଚଳରେ ଶ୍ରୀବିଷ୍ଣୁ ପ୍ରତିମା ମାନ ନିର୍ମାଣ କରଯାଇ ତଥା ତାହାକୁ ଦେବଗୃହ ମାନଙ୍କରେ ପ୍ରତିଷ୍ଠା କରାଯାଇ ପୂଜା ଆରାଧନା କରାଯାଉଥିବାର ପ୍ରମାଣମାନ ପ୍ରାପ୍ତହୁଏ । ଭାରତରେ ଶୁଙ୍ଗ ରାଜତ୍ୱ କାଳରୁ ହିଁ ବିଷ୍ଣୁ ପୂଜାର ସଙ୍କେତ ପ୍ରାପ୍ତହୁଏ । ଖ୍ରୀଷ୍ଟୀୟ ଦ୍ୱିତୀୟ ଶତାବ୍ଦୀରେ ନିର୍ମିତ ହୋଇଥିବା ଭଗବାନ୍ ଶ୍ରୀବିଷ୍ଣୁଙ୍କର ଶଙ୍ଖ, ଚକ୍ର, ଗଦା ତଥା ଜଳପାତ୍ରଧାରୀ ଚତୁର୍ଭୁଜ ମୂର୍ତ୍ତି ମଥୁରାର ସଂଗ୍ରହାଳୟରେ ସଂରକ୍ଷିତ ଅଛି । ଅବଶ୍ୟ କୁଶାଣ କାଳୀନ ବୋଧିସତ୍ତ୍ୱ ପ୍ରତିମା ତଥା ତତ୍କାଳୀନ ବିଷ୍ଣୁ ପ୍ରତିମା ଗୁଡ଼ିକ ମଧ୍ୟରେ ଅନେକ ସାମ୍ୟ ପରିଲକ୍ଷିତ ହୁଏ । ଗୁପ୍ତ ନୃପତିମାନେ ବିଷ୍ଣୁ ଉପାସକ ଥିଲେ । ଗୁପ୍ତଯୁଗରେ (ଖ୍ରୀଷ୍ଟୀୟ ଚତୁର୍ଥ-ପଞ୍ଚମ ଶତାବ୍ଦୀ) ନିର୍ମିତ ହୋଇଥିବା ଦେବଗଡ଼ର ଦଶାବତାର ମନ୍ଦିରରେ ଶ୍ରୀବିଷ୍ଣୁଙ୍କର ନର ନାରାୟଣ, ଗଜେନ୍ଦ୍ର ମୋକ୍ଷଣ ତଥା ଶେଷଶାୟୀ ସ୍ୱରୂପର ବିଗ୍ରହମାନ ଅଙ୍କିତ ହୋଇଅଛି । ସେହିପରି ବିଦିଶା ନିକଟସ୍ଥ ଉଦୟଗିରି-ପର୍ବତରେ ଚତୁର୍ଭୁଜ ଭଗବାନ ଶ୍ରୀବିଷ୍ଣୁଙ୍କର ବିଗ୍ରହ ପ୍ରାପ୍ତ ହୋଇଅଛି । ଗୁପ୍ତ ଯୁଗପରେ ମଧ୍ୟ ଭାରତର ଭିନ୍ନ ଭିନ୍ନ ଅଞ୍ଚଳରେ ବିଭିନ୍ନ ବୈଷ୍ଣବ ଧର୍ମାବଲମ୍ବୀ ନୃପତି ମାନଙ୍କର ପୃଷ୍ଠପୋଷକତାରେ ଅନେକ ବିଷ୍ଣୁ ମନ୍ଦିର ଓ ବିଷ୍ଣୁ ପ୍ରତିମା ନିର୍ମାଣ କରାଯାଇ ଥିବାର ନିଦର୍ଶନମାନ ଇତିହାସଗ୍ରନ୍ଥ ମାନଙ୍କରେ ଅନୁସନ୍ଧେୟ ।

ଭଗବାନ୍ ଶ୍ରୀବିଷ୍ଣୁଙ୍କୁ କୃଷ୍ଣାବତାର ରୂପରେ ପୂଜା କରାଯିବାର ପରଂପରା ଗୁପ୍ତ ଯୁଗରୁ ହିଁ ପ୍ରବର୍ତ୍ତିତ ହୋଇଥିବାର ଅବଗତ ହୁଏ । ଏହ୍ଲାବାଦ ନିକଟରୁ ପ୍ରାପ୍ତ ହୋଇ ପ୍ରୟାଗ ସଂଗ୍ରହାଳୟରେ ସଂରକ୍ଷିତ ଥିବା ଏକ ମୂର୍ତ୍ତିରେ କୃଷ୍ଣାବତାରର ସଂକେତ ପ୍ରାପ୍ତହୁଏ । ଉପର୍ଯ୍ୟୁକ୍ତ ଦେବଗଡର ଦଶାବତାର ମନ୍ଦିରରେ ମଧ୍ୟ ଶ୍ରୀକୃଷ୍ଣଲୀଳା ସଂବନ୍ଧୀ ଅନେକ ଦୃଶ୍ୟର ବିଗ୍ରହ ଦୃଷ୍ଟିଗୋଚର ହୁଅନ୍ତି । ଚାଲୁକ୍ୟ ରାଜବଂଶ (ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀ) କାଳରେ ନିର୍ମିତ ହୋଇଥିବା ଅନେକ ମନ୍ଦିରରେ କାଳୀୟ ଦମନ, ଗୋବର୍ଦ୍ଧନ ଧାରଣ ପ୍ରଭୃତି

ଅନେକ କୃଷ୍ନଲୀଳା ସମ୍ବଳିତ ଦୃଶ୍ୟ ପ୍ରାପ୍ତହୁଏ । ଭୁବନେଶ୍ୱରରେ ସ୍ୱର୍ଣ୍ଣଜଳେଶ୍ୱର ଲିଙ୍ଗରାଜ, ପ୍ରଭୃତି ମନ୍ଦିରରେ ମଧ୍ୟ ନବନୀତ-ଭକ୍ଷୀ କୃଷ୍ନ, ଗୋବର୍ଦ୍ଧନଧାରୀ କୃଷ୍ନ ପ୍ରଭୃତିଙ୍କର ବିଗ୍ରହ ଉପଲବ୍ଧ ହୁଅନ୍ତି ।

ଏହି ପ୍ରକାରେ ଭଗବାନ୍ ଶ୍ରୀବିଷ୍ନୁ ତଥା ତାଙ୍କର ଶ୍ରୀକୃଷ୍ନାବତାରର ପାରଂପରିକ ବିଗ୍ରହଶୈଳୀର ପରିପ୍ରେକ୍ଷୀରେ ଶ୍ରୀନୀଳାଚଳ ଠାରେ ପୂଜିତ ହେଉଥିବା ଚତୁର୍ଦ୍ଧାମୂର୍ତ୍ତି ଶ୍ରୀଜଗନ୍ନାଥଙ୍କର ଅଦ୍ୟତନ ବିଗ୍ରହ ଲକ୍ଷଣ ସମୂହ ଅତ୍ୟନ୍ତ ବିଲକ୍ଷଣ ତଥା ବିସ୍ମୟକର ମନେ ହୁଅନ୍ତି । ନୀଳାଦ୍ରିନାଥ ଶ୍ରୀଜଗନ୍ନାଥଙ୍କର ଅଦ୍ୟତନୀ ପ୍ରତିମା ଅତି ପ୍ରାଚୀନ ନହେଲେ ମଧ୍ୟ ଏହି କ୍ଷେତ୍ରଟିର ପ୍ରାଚୀନତ୍ୱ ବିଭିନ୍ନ ପୁରାଣରେ ପ୍ରତିପାଦିତ ହୋଇଅଛି । ବ୍ରହ୍ମପୁରାଣ, ନାରଦପୁରାଣ ଓ ସ୍କନ୍ଦପୁରାଣ (ଉତ୍କଳଖଣ୍ଡ)ରେ ନୀଳାଚଳନାଥ ଶ୍ରୀପୁରୁଷୋତ୍ତମଙ୍କର ମାହାତ୍ମ୍ୟ ବିସ୍ତୃତ ରୂପରେ ବର୍ଣ୍ଣିତ ହୋଇଛି । ଏହି ପ୍ରସଙ୍ଗରେ ଶ୍ରୀପୁରୁଷୋତ୍ତମ କ୍ଷେତ୍ରରେ ଶ୍ରୀବିଗ୍ରହମାନଙ୍କର ନିର୍ମାଣ ଉପାଖ୍ୟାନ ତଥା ତତ୍କାଳୀନ ପ୍ରତିମା-ଲକ୍ଷଣମାନ ପ୍ରଦତ୍ତ ହୋଇଅଛି । ଏହା ବ୍ୟତୀତ ପଦ୍ମପୁରାଣ, ଗରୁଡ଼ପୁରାଣ, ବାମନ ପୁରାଣ, ବିଷ୍ନୁପୁରାଣ, କୂର୍ମ ପୁରାଣ, ଅଗ୍ନିପୁରାଣ ପ୍ରଭୃତିରେ ଏହି କ୍ଷେତ୍ରର ତଥା ଶ୍ରୀଜଗନ୍ନାଥଙ୍କର ପ୍ରସଙ୍ଗ ସୂଚିତ ହୋଇଥିବାରୁ କ୍ଷେତ୍ରଟିର ପ୍ରାଚୀନତ୍ୱ ସିଦ୍ଧ ହେଉଛି ।

ବ୍ରହ୍ମପୁରାଣରେ ଉଲ୍ଲେଖ ଅଛି ଯେ ସତ୍ୟ ଯୁଗରେ ମାଳବ ଦେଶର ରାଜା ଇନ୍ଦ୍ରଦ୍ୟୁମ୍ନ ସର୍ବଯୋଗେଶ୍ୱର ହରିଙ୍କୁ ପୂଜା କରିବାର ଅଭିଳାଷରେ ନିଜର ସୈନ୍ୟ-ସାମନ୍ତ, ପରିବାର, ଦାସ-ଦାସୀ ପୁରଜନ ମାନଙ୍କ ସହିତ ଅବନ୍ତୀ ବା ଉଜ୍ଜୟିନୀରୁ ବହିର୍ଗତ ହୋଇ ଉତ୍କଳ ରାଜ୍ୟକୁ ଅନ୍ତଃପାତୀ ଦକ୍ଷିଣ ସମୁଦ୍ର ତୀରରେ ଉପସ୍ଥିତ ହେଲେ । ସେଠାରେ ଥିବା ପୁରୁଷୋତ୍ତମ ବା ନୀଳାଚଳ କ୍ଷେତ୍ରରେ ଭଗବାନ୍ ପୁରୁଷୋତ୍ତମ ନିଜର ଇନ୍ଦ୍ରନୀଳମୟୀ ପ୍ରତିମାକୁ ଗୁପ୍ତ କରି ଦେଇଥିଲେ । ମହାରାଜ ଇନ୍ଦ୍ରଦ୍ୟୁମ୍ନ ଉତ୍କଳ, କଳିଙ୍ଗ ଓ କୋଶଳ ଦେଶର ରାଜାଙ୍କ ସହାୟତାରେ ସେଠାରେ ଏକ ମନୋରମ ମନ୍ଦିର ନିର୍ମାଣ କରି ତହିଁରେ ପ୍ରତିଷ୍ଠା କରିବା ନିମନ୍ତେ ଯୋଗ୍ୟ ପ୍ରତିମା ନିର୍ମାଣ କରିବାକୁ ବିଚାର କରିବାରେ ସ୍ୱୟଂ ନାରାୟଣ ସ୍ୱପ୍ନାଦେଶ ଦେଇ ତାଙ୍କୁ ସମୁଦ୍ରତୀରସ୍ଥ ଏକ ମହାବୃକ୍ଷର ସନ୍ଧାନ ଦେଲେ । ପରଦିନ ପ୍ରଭାତରେ ରାଜା ଯଥାସ୍ଥାନକୁ ଗମନ କରି ସେହି ମହାବୃକ୍ଷକୁ ଦର୍ଶନ କଲେ । ତାହାର ନାମ ଓ ଜାତି ଅଜ୍ଞାତଥିଲା । ତାହାକୁ ରାଜା ସ୍ୱହସ୍ତରେ

ଛେଦନ କରିବା ପରେ ସ୍ୱୟଂ ଭଗବାନ ବିଷ୍ଣୁ ଓ ବିଶ୍ୱକର୍ମା ବ୍ରାହ୍ମଣ ବେଶରେ ଆସି ଉପସ୍ଥିତ ହେଲେ । ମହାରାଜାଙ୍କର ଚିନ୍ତାର କାରଣ ଅବଗତ ହୋଇ ଭଗବାନ୍ ବିଷ୍ଣୁ, ବିଶ୍ୱକର୍ମାଙ୍କୁ ଉକ୍ତ ବୃକ୍ଷର ଦାରୁରେ ତିନିଗୋଟି ମୂର୍ତ୍ତି ନିର୍ମାଣ କରିବାକୁ ଆଦେଶ ଦେଲେ । ପ୍ରଥମ ମୂର୍ତ୍ତି ଶ୍ରୀକୃଷ୍ଣଙ୍କର ହେବ । ତାହା କୃଷ୍ଣରୂପ, ପରମଶାନ୍ତ, ଚକ୍ଷୁ ପଦ୍ମପତ୍ର ପରି ଆୟତ, ବକ୍ଷ ଶ୍ରୀବତ୍ସଲାଞ୍ଛନ ଓ କୌସ୍ତୁଭଧାରୀ ତଥା ଭୁଜରେ ଶଙ୍ଖ, ଚକ୍ର, ଗଦାଧାରୀ ହେବ । ଦ୍ୱିତୀୟ ମୂର୍ତ୍ତି ଗୌରାଙ୍ଗ କ୍ଷୀରତୁଲ୍ୟ ବର୍ଣ୍ଣ, ସ୍ୱସ୍ତିକ ଚିହ୍ନଯୁକ୍ତ ଅନନ୍ତନାମକ, ମହାବଳବାନ, ହସ୍ତରେ ଲଙ୍ଗଳାସ୍ତ୍ରଧାରୀ ହେବ । ତୃତୀୟ ମୂର୍ତ୍ତି ବାସୁଦେବଙ୍କର ଭଗିନୀ ସୁଭଦ୍ରାଙ୍କର ହେବ ଓ ସେ ସ୍ୱର୍ଣ୍ଣବର୍ଣ୍ଣା ତଥା ଅତି ଶୋଭନା ହେବେ । ଏହାଶୁଣି ବିଶ୍ୱକର୍ମା ସେହିପରି ପ୍ରତିମା ନିର୍ମାଣ କଲେ । ପ୍ରଥମେ ସେ ବଳଦେବଙ୍କର ପ୍ରତିମା ନିର୍ମାଣ କଲେ । ତାହା ଶୁକ୍ଳବର୍ଣ୍ଣ ତଥା ଶାରଦ ଚନ୍ଦ୍ରପରି ଜ୍ୟୋତିଃ ସଂପନ୍ନ ଥିଲା । ତାଙ୍କର ଚକ୍ଷୁ ଆରକ୍ତ, ଶରୀର ବିଶାଳ ତଥା ମସ୍ତକ ସର୍ପ ଫଣା ଦ୍ୱାରା ବିକଟ ଥିଲା । ସେ ନୀଳାମ୍ବର ପରିଧାନ କରିଥିଲେ, କର୍ଣ୍ଣରେ ଗୋଟିଏ କୁଣ୍ଡଳ ଓ ହସ୍ତରେ ଗଦା ତଥା ମୂଷଳ ଧାରଣ କରିଥିଲେ । ସେ ଅତ୍ୟନ୍ତ ଉଗ୍ର, ବଳବାନ ତଥା ମଦୋଦ୍ଧତ ଦେଖାଯାଉଥିଲେ । ଦ୍ୱିତୀୟ ବିଗ୍ରହର ଚକ୍ଷୁ ପଦ୍ମପତ୍ର ତୁଲ୍ୟ ଆୟତ, ଶରୀର ନୀଳମେଘ ତୁଲ୍ୟ ତଥା ଅତସୀପୁଷ୍ପ ସଦୃଶ ନୀଳବର୍ଣ୍ଣ, ପୀତ ବସ୍ତ୍ରଯୁକ୍ତ, ଶ୍ରୀବତ୍ସ-ଲକ୍ଷଣାଙ୍କିତ, ହସ୍ତ ଚକ୍ରଧାରୀ ହୋଇଥିଲା । ସେହି ବିଗ୍ରହଟି ସର୍ବପାପହାରକ ହରିଙ୍କର ଥିଲା । ତୃତୀୟ ବିଗ୍ରହଟି ଥିଲା ଦେବୀ ସୁଭଦ୍ରାଙ୍କର । ତାଙ୍କର ଦେହ ଜ୍ୟୋତି ସ୍ୱର୍ଣ୍ଣ ପରି ଥିଲା, ଚକ୍ଷୁ ପଦ୍ମ ପତ୍ର ପରି ବିସ୍ତୃତ ଥିଲା । ସେ ବିଚିତ୍ର ବସ୍ତ୍ର ତଥା ରତ୍ନହାର ଓ କେୟୂର ପ୍ରଭୃତି ବିଚିତ୍ର ଆଭୂଷଣ ଧାରଣ କରିଥିଲେ । ତାଙ୍କର କୁଚଦ୍ୱୟ ପୀନ ତଥା ଉନ୍ନତ ଥିଲା । ଏହିପରି ତାଙ୍କର ରମ୍ୟ ମୂର୍ତ୍ତିକୁ ବିଶ୍ୱକର୍ମା ନିର୍ମାଣ କରିଥିଲେ[7] ।

ସେହି ବ୍ରହ୍ମପୁରାଣରେ ପରବର୍ତ୍ତୀ ଅନ୍ୟ ଏକ ସ୍ଥଳରେ ଶ୍ରୀପୁରୁଷୋତ୍ତମ ବିଗ୍ରହର ଅନ୍ୟ ଏକ ବିବରଣୀ ପ୍ରଦାନ କରାଯାଇଛି । ତଦନୁସାରେ କଦାଚିତ୍ ଆଦିକଳ୍ପରେ ସ୍ୱୟଂ ବ୍ରହ୍ମା ଦେବଶିଳ୍ପୀ ବିଶ୍ୱକର୍ମାଙ୍କୁ ଡାକି ପୃଥିବୀରେ ବାସୁଦେବଙ୍କର ଏପରି ଏକ ଶୈଳମୟୀ ପ୍ରତିମା ନିର୍ମାଣ କରିବାକୁ କହିଲେ, ଯାହାଙ୍କୁ ଦର୍ଶନ କରି ଦାନବ ପ୍ରପୀଡ଼ିତ ଇନ୍ଦ୍ରାଦି ଦେବଗଣ ତଥା ଭକ୍ତ ମନୁଷ୍ୟଗଣ ସୁମେରୁ ପର୍ବତର ଶିଖରରେ ଚିରକାଳ ବାସୁଦେବଙ୍କୁ ଆରାଧନା କରି ନିର୍ଭୟରେ ଓ ସୁଖରେ ବାସ କରିପାରିବେ । ବିଶ୍ୱକର୍ମା ସେହିପରି ଏକ ସୁନ୍ଦର ପ୍ରତିମା

ନିର୍ମାଣ କରିଥିଲେ । ସେ ଶଙ୍ଖ, ଚକ୍ର ଓ ଗଦା ଧାରଣ କରିଥିଲେ । ଶ୍ରୀବତ୍ସ-ଲକ୍ଷଣ ଯୁକ୍ତ ହୋଇଥିଲେ, ବକ୍ଷସ୍ଥଳକୁ ବନମାଳା ଦ୍ୱାରା ଆବୃତ କରିଥିଲେ, ମୁକୁଟ, ଅଙ୍ଗଦ, କୁଣ୍ଡଳ ପ୍ରଭୃତି ଅଳଙ୍କାର ଧାରଣ କରିଥିଲେ, ପୀତବସ୍ତ୍ର ପରିଧାନ କରିଥିଲେ ଏବଂ ସର୍ବ ଲକ୍ଷଣ ସଂପନ୍ନ ହୋଇଥିଲେ । ତାଙ୍କର ନେତ୍ର ଯୁଗଳ ପଦ୍ମପତ୍ର ପରି ସୁନ୍ଦର ଥିଲା । ବ୍ରହ୍ମା ସ୍ୱୟଂ ଏହି ପ୍ରତିମାଙ୍କୁ ପ୍ରତିଷ୍ଠା କରିଥିଲେ । ତାପରେ କୌଣସି ସମୟରେ ଇନ୍ଦ୍ର ବ୍ରହ୍ମଲୋକକୁ ଆସି ସେହି ପ୍ରତିମାଙ୍କୁ ଦର୍ଶନକରି ତାଙ୍କୁ ନେଇ ସ୍ୱପୁରକୁ ଚାଲିଗଲେ ଓ ତାଙ୍କର ପୂଜାଆରାଧନା କରି ବହୁ ପ୍ରତାପଶାଳୀ ଅସୁରଙ୍କୁ ବଧ କଲେ । ତ୍ରେତା ଯୁଗରେ ଦୈତ୍ୟରାଜ ରାବଣ ଦେବରାଜ ଇନ୍ଦ୍ରଙ୍କୁ ପରାସ୍ତ କଲେ ଓ ଅମରାବତୀରେ ପ୍ରବେଶ କରି ଧନରତ୍ନ ଲୁଣ୍ଠନ କଲେ । ସେହି କାଳରେ ବାସୁଦେବଙ୍କର ପ୍ରତିମା ମଧ୍ୟ ତାହାଙ୍କର ହସ୍ତଗତ ହେଲା । ରାବଣର ଭ୍ରାତା ବିଭୀଷଣ ସେହି ପ୍ରତିମାକୁ ଦେଖି ତାହା ପ୍ରଦାନ କରିବାକୁ ଜ୍ୟେଷ୍ଠଭ୍ରାତାଙ୍କୁ ଅନୁରୋଧ କଲେ ଓ ରାବଣ, 'ମୁଁ ଏହା ନେଇ କଣ କରିବି' କହି ବିଭୀଷଣଙ୍କୁ ତାହା ପ୍ରଦାନ କଲେ । ବିଭୀଷଣ ବହୁ ବର୍ଷ ପର୍ଯ୍ୟନ୍ତ ସେହି ପ୍ରତିମାଙ୍କୁ ପୂଜାକରି ସିଦ୍ଧିପ୍ରାପ୍ତ ହେଲେ । କାଳକ୍ରମେ ଭଗବାନ ରାମଚନ୍ଦ୍ର ରାବଣଙ୍କୁ ବଧ କରି ଓ ବିଭୀଷଣଙ୍କୁ ଲଙ୍କା-ରାଜ୍ୟ ଅର୍ପଣ କରି ସେହି ବାସୁଦେବ-ପ୍ରତିମାକୁ ନେଇ ଅଯୋଧ୍ୟା ପ୍ରତ୍ୟାବର୍ତ୍ତନ କଲେ । ସେ ଅନୁଜ ଭରତଙ୍କୁ ରାଜ୍ୟର ଦାୟିତ୍ୱ ଦେଇ ସ୍ୱୟଂ ନିଜର ପୁରାତନୀ ପ୍ରତିମା ବାସୁଦେବଙ୍କ ପୂଜାରେ କାଳାତିପାତ କଲେ । ରାଜତ୍ୱର ଶେଷରେ ସେ ସେହି ବିଗ୍ରହଙ୍କୁ ସମୁଦ୍ରରାଜାଙ୍କୁ ପ୍ରଦାନ କରି ସ୍ୱୟଂ ବିଷ୍ଣୁଲୋକକୁ ଗମନ କଲେ । ପରେ ଦ୍ୱାପର ଯୁଗରେ ଭଗବାନ ନାରାୟଣ, ସଂକର୍ଷଣଙ୍କ ସହିତ ବାସୁଦେବ କୁଳରେ ଜନ୍ମହୋଇ ଅସୁରନାଶ ଓ ଧର୍ମରକ୍ଷା କରିଥିଲେ । ସେହି କାଳରେ ସମୁଦ୍ରରାଜ କୌଣସି କାରଣରୁ ପୂର୍ବୋକ୍ତ ସର୍ବବାଞ୍ଛା ଫଳପ୍ରଦ ବାସୁଦେବ ପ୍ରତିମାଙ୍କୁ ସର୍ବଲୋକର ହିତନିମନ୍ତେ ଏହି ପୁଣ୍ୟ କ୍ଷେତ୍ରବର—ଶ୍ରୀପୁରୁଷୋତ୍ତମ ଠାରେ ଜଳମଧ୍ୟରୁ ଉଦ୍ଧାର କରି ସ୍ଥାପନ କଲେ । ସେହି ଦିନଠାରୁ ଏହି ମୁକ୍ତିପଦ କ୍ଷେତ୍ରରେ ଦେବଦେବ ତଥା ସର୍ବକାମପ୍ରଦ ପ୍ରଭୁ ବିରାଜମାନ ରହିଛନ୍ତି[୭] ।

ନାରଦ ପୁରାଣର ବର୍ଣ୍ଣନାଟି ମଧ୍ୟ ବ୍ରହ୍ମପୁରାଣର ଉପାଖ୍ୟାନର ଅନୁରୂପ ଅଟେ । ଏଥିରେ ମଧ୍ୟ ଭଗବାନ ବିଷ୍ଣୁ ବ୍ରାହ୍ମଣ ବେଶରେ ଉପସ୍ଥିତ ହୋଇ ବ୍ରାହ୍ମଣବେଶୀ ବିଶ୍ୱକର୍ମାଙ୍କୁ ଯେପରି ପ୍ରତିମା-ନିର୍ମାଣ କରିବାକୁ ଆଦେଶ ଦେଇଥିଲେ, ତାହା ଏହି ଯେ, ପ୍ରଥମ ବିଗ୍ରହ ଶ୍ରୀକୃଷ୍ଣଙ୍କର ରୂପ ପରମ ଶାନ୍ତଦେବ

ଓ ଚକ୍ଷୁ ପଦ୍ମ ପତ୍ର ପରି ହେବ । ତାଙ୍କର ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ ତଥା କୌସ୍ତୁଭମଣି ଓ ହସ୍ତରେ ଶଙ୍ଖ, ଚକ୍ର ତଥା ଗଦା ଆୟୁଧ ରହିବ । ଦ୍ୱିତୀୟ ପ୍ରତିମାଟି ଅନନ୍ତ ଦେବଙ୍କର ହେବ । ତାଙ୍କର ଦେହ ଗୋ ଦୁଗ୍ଧ ପରି ଗୌରବର୍ଣ୍ଣ ତଥା ସ୍ୱସ୍ତିକ ଚିହ୍ନଯୁକ୍ତ ହେବ । ସେ ହସ୍ତରେ ହଳ ଧାରଣ କରିଥିବେ । ତୃତୀୟ ପ୍ରତିମାଟି ଦେବୀ ସୁଭଦ୍ରାଙ୍କର ହେବ । ତାଙ୍କର ଶରୀର-ବର୍ଣ୍ଣ ସ୍ୱର୍ଣ୍ଣ ପରି ହେବ ଓ ସେ ସର୍ବ ଶୁଭ-ଲକ୍ଷଣ ଯୁକ୍ତ ତଥା ସର୍ବ ଶୋଭସଂପନ୍ନ ହେବେ । ବିଶ୍ୱକର୍ମା ପ୍ରଥମେ ବଳଭଦ୍ରଙ୍କର ମୂର୍ତ୍ତି ନିର୍ମାଣ କଲେ । ତାଙ୍କର କର୍ଣ୍ଣ ଯୁଗଳରେ ବିଚିତ୍ର କୁଣ୍ଡଳ ମଣ୍ଡିତ ହୋଇଥିଲା ଓ ସେ ନିଜ ହସ୍ତରେ ଚକ୍ର ତଥା ହଳଧାରଣ କରିଥିଲେ । ତାଙ୍କର ଶରୀର ଶରତ କାଳୀନ ଚନ୍ଦ୍ର ପରି ଧବଳ ବର୍ଣ୍ଣ ଓ ନେତ୍ର ଯୁଗଳ ଈଷତ୍ ଲାଲଥିଲା । ତାଙ୍କର ଦେହ ବିଶାଳ ଥିଲା ଓ ମସ୍ତକ ଫଣାକାରଥିଲା । ସେ ନୀଳବସ୍ତ୍ର ଧାରଣ କରିଥିଲେ । ଦ୍ୱିତୀୟ ବିଗ୍ରହ ଭଗବାନ ବାସୁଦେବଙ୍କର ଥିଲା ତାଙ୍କର ନେତ୍ର ପ୍ରଫୁଲ୍ଲ ପଦ୍ମପତ୍ର ପରି ସୁନ୍ଦରଥିଲା । ଶରୀର-କାନ୍ତି ନୀଳ ମେଘ ପରି ଶ୍ୟାମଳଥିଲା । ଶ୍ରୀଅଙ୍ଗରେ ପିତାମ୍ବର ଶୋଭା ପାଉଥିଲା, ବକ୍ଷସ୍ଥଳରେ ଶ୍ରୀବତ୍ସ ଚିହ୍ନ ଓ ହସ୍ତରେ ଶଙ୍ଖ ଚକ୍ର ଥିଲା । ତୃତୀୟ ବିଗ୍ରହ ଥିଲା ଦେବୀ ସୁଭଦ୍ରାଙ୍କର । ତାଙ୍କର ଦେହକାନ୍ତି ସୁବର୍ଣ୍ଣ ପରି ଦୀପ୍ତିମାନ ହେଉଥିଲା । ନେତ୍ର ପଦ୍ମପତ୍ର ପରି ବିଶାଳ ଥିଲା । ଶରୀର ବିଚିତ୍ର ବସ୍ତ୍ରରେ ଆଚ୍ଛାଦିତ ଥିଲା ଓ ସେ ହାର, କେୟୂର ଆଦି ଆଭୂଷଣ ଦ୍ୱାରା ଭୂଷିତ ହୋଇଥିଲେ । ଏହିପରି ବିଶ୍ୱକର୍ମା ତିନିଗୋଟି ରମଣୀୟ ମୂର୍ତ୍ତି ନିର୍ମାଣ କରିଥିଲେ । ଏହା ଏକ ଅଦ୍ଭୁତ ଘଟଣା ଯେ ତିନିଗୋଟି ପ୍ରତିମା କ୍ଷଣକ ମାତ୍ରରେ ହିଁ ନିର୍ମିତ ହୋଇଗଲେ । ତତ୍ପରେ ରାଜା ଇନ୍ଦ୍ରଦ୍ୟୁମ୍ନ ତିନି ବିଗ୍ରହଙ୍କୁ ବିମାନାକାର ରଥରେ ଆରୋହଣ କରାଇ ତାଙ୍କ ଦ୍ୱାରା ନିର୍ମିତ ହୋଇଥିବା ମନ୍ଦିର ନିକଟକୁ ଆଣି ତହିଁରେ ପ୍ରତିଷ୍ଠା କରିଥିଲେ[୨] ।

ପଦ୍ମପୁରାଣରେ ଅଯୋଧ୍ୟାଧିପତି ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଅଶ୍ୱମେଧ-ଯାଗ ପ୍ରସଙ୍ଗରେ ଶ୍ରୀଶତ୍ରୁଘ୍ନଙ୍କର ନୀଳପର୍ବତର ଶିଖରରେ ବିରାଜମାନ କରୁଥିବା ଭଗବାନ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ କରିଥିବା ବୃତ୍ତାନ୍ତ ବର୍ଣ୍ଣିତ ହୋଇଅଛି । ଏହି ଅବସରରେ ଶତ୍ରୁଘ୍ନଙ୍କୁ ମନ୍ତ୍ରୀ ସୁମତି ତତ୍ପୂର୍ବରୁ କାଞ୍ଚୀରାଜ ରତ୍ନଗ୍ରୀବ ନୀଳାଚଳରେ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ ଓ ପୂଜା କରିଥିବାର ଏବଂ ନୀଳାଚଳ ନିକଟସ୍ଥ କୌଣସି ଶବର ବାଳକ ମଧ୍ୟ ଅବଲୀଳା କ୍ରମେ ନୀଳାଚଳରେ ଉପସ୍ଥିତ ହୋଇ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ ତଥା ତାଙ୍କର ମହାପ୍ରସାଦ ସେବନ କରିଥିବାର

ବିବରଣୀ ଶୁଣ ଇଛନ୍ତି । ଏହି ଦୁର୍ଲଭ ବିବରଣୀ ଅନୁସାରେ ଶ୍ରୀନୀଳପର୍ବତରେ ଏକ ସୁନ୍ଦର ସ୍ୱର୍ଣ୍ଣମୟ ଦେବାଳୟ ଅବସ୍ଥିତ । ତନ୍ମଧ୍ୟରେ ଏକ ସ୍ୱର୍ଣ୍ଣ-ସିଂହାସନ ଉପରେ ଭଗବାନ ପୁରୁଷୋତ୍ତମ ଚତୁର୍ଭୁଜ ରୂପରେ ବିରାଜମାନ୍ ତାହାଙ୍କର ଶ୍ରୀବିଗ୍ରହ କିରୀଟ, ହାର, କେୟୂର ଓ ଗ୍ରୈବେୟକ (କଣ୍ଠି) ପ୍ରଭୃତି ଆଭୂଷଣ ଦ୍ୱାରା ଅତିଶୟ ଶୋଭମାନ ଦେଖାଯାଏ । ସେ କର୍ଣ୍ଣରେ ଅତି ଉଜ୍ଜ୍ୱଳ ତଥା ମନୋହର କୁଣ୍ଡଳ ଧାରଣ କରନ୍ତି । ଚଣ୍ଡ, ପ୍ରଚଣ୍ଡ, ବିଜୟ ପ୍ରଭୃତି ପରିକରଗଣ ତାହାଙ୍କର ସେବାରେ ନିଯୁକ୍ତ ରହନ୍ତି[10] ।

ସ୍କନ୍ଦପୁରାଣର ଉତ୍କଳଖଣ୍ଡରେ ଶ୍ରୀପୁରୁଷୋତ୍ତମ ମାହାତ୍ମ୍ୟ ପ୍ରସଙ୍ଗରେ ଶ୍ରୀପୁରୁଷୋତ୍ତମ ବିଗ୍ରହ ସଂପର୍କରେ ସାମାନ୍ୟ ପୃଥକ୍ ବିବରଣୀ ପ୍ରାପ୍ତ ହୁଏ । ତହିଁରେ ବର୍ଣ୍ଣିତ ଅଛି ଯେ ମାଳବରାଜ ଇନ୍ଦ୍ରଦ୍ୟୁମ୍ନ ଶ୍ରୀନୀଳ ଶୈଳ ଠାରେ ଉପସ୍ଥିତ ହୋଇ ଭଗବାନ ଶ୍ରୀବିଷ୍ଣୁଙ୍କ ଦାରୁମୟୀ ପ୍ରତିମା ନିର୍ମାଣ କରିବାକୁ ଉଦ୍ୟତ ହେବାରେ ଦୈବୀବାଣୀ ପ୍ରକାରେ ଜନୈକ ଶସ୍ତ୍ରହସ୍ତ ବୃଦ୍ଧ ବର୍ଦ୍ଧକି ସେହି ପ୍ରତିମା ନିର୍ମାଣ କରିବାକୁ ଆସିଥିଲେ ଓ ତାହାଙ୍କୁ ରାଜା ଇନ୍ଦ୍ରଦ୍ୟୁମ୍ନ ଗୋଟିଏ ଗୃହ ମଧ୍ୟରେ ଆବଦ୍ଧ କରି ଶ୍ରୀବିଗ୍ରହମାନଙ୍କର ନିର୍ମାଣ ଦାୟିତ୍ୱ ଦେଇଥିଲେ । ପନ୍ଦର ଦିନପରେ ସଙ୍କେତ ପାଇ ଦ୍ୱାର ଉନ୍ମୋଚନ କରାଯିବାରେ ଚତୁର୍ମୂର୍ତ୍ତି ରୂପରେ ଶ୍ରୀବିଷ୍ଣୁ ଆବିର୍ଭୂତ ହେଲେ । ସୁଭଦ୍ରା, ବଳଭଦ୍ର ଓ ସୁଦର୍ଶନଙ୍କ ସହିତ 'ଭଗବାନ' ଦିବ୍ୟସିଂହାସନ ଉପରେ ଆସୀନ ହୋଇଥିଲେ । ଜନାର୍ଦ୍ଦନ ବା ବିଷ୍ଣୁଙ୍କର ଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଶୋଭା ପାଉଥିଲା । ପନ୍ନଗାକୃତି ଅନନ୍ତ ଦେବ ନିଜ ହସ୍ତରେ ଗଦା, ମୂଷଳ, ଚକ୍ର ଓ ପଦ୍ମ ଧାରଣ କରିଥିଲେ ଏବଂ ତାଙ୍କର ସାତଗୋଟି ଫଣା ସାତ ମୁକୁଟ ତଥା କୁଣ୍ଡଳ ପରିଧାନ କରି ଚକ୍ରାକାରରେ ଅବସ୍ଥିତ ଥିଲା । ଗୌରୁ ବଦନା ସୁଭଦ୍ରା ଏକ ହସ୍ତରେ ବରପଦ୍ମ ଓ ଅନ୍ୟ ହସ୍ତରେ ଅଭୟ ମୁଦ୍ରାଧାରଣ କରିଥିଲେ[11] ।

ପରେ ପରେ ଏହି ଦେବତାମାନଙ୍କର ସ୍ୱରୂପ ମଧ୍ୟ ବର୍ଣ୍ଣନା କରାଯାଇଛି ଯେ ଦେବୀ ସୁଭଦ୍ରା ସର୍ବଚୈତନ୍ୟରୂପିଣୀ ଲକ୍ଷ୍ମୀହିଁ ଅଟନ୍ତି । କୃଷ୍ଣାବତାରରେ ଭଗବାନ ତାଙ୍କର ବଳରୂପକୁ ଚିନ୍ତା କରିବାରେ ବଳଭଦ୍ରଙ୍କର ଆକୃତି ରୋହିଣୀଙ୍କର ଗର୍ଭରୁ ଜାତ ହୋଇଅଛି । ତେଣୁ କୃଷ୍ଣ ଓ ବଳରାମଙ୍କ ମଧ୍ୟରେ କୌଣସି ପ୍ରଭେଦ ନାହିଁ । ବଳଭଦ୍ର ମଧ୍ୟ ଲୀଳାବତାରୀ କୃଷ୍ଣଙ୍କୁ କ୍ଷଣେମାତ୍ର ତ୍ୟାଗ କରି ରହିପାରନ୍ତି ନାହିଁ । ପୁଣି ଏକ ଗର୍ଭରୁ ଉତ୍ପନ୍ନ ହୋଇଥିବା

ଯୋଗେ ଲୌକିକ ଦୃଷ୍ଟିରେ ସୁଭଦ୍ରା, ବଳଭଦ୍ରଙ୍କର ଭଗିନୀ ବୋଲି ପୌରାଣିକୀ କଥା ରହିଅଛି । ପୁରୁଷ ଓ ସ୍ତ୍ରୀ ରୂପରେ ଲକ୍ଷ୍ମୀ ସର୍ବତ୍ର ବିଦ୍ୟାମାନ ଥାଆନ୍ତି । ଭଗବାନ ଶ୍ରୀବିଷ୍ଣୁ ପୁରୁଷ ନାମରେ ଓ କମଳାଳୟା ଲକ୍ଷ୍ମୀ ସ୍ତ୍ରୀ ରୂପରେ । ପୁଣି ସମସ୍ତ ଭୁବନର ଧରାଧାରୀ ଅନନ୍ତ ଦେବ ହିଁ ବଳଦେବ ନାମରେ ଅଭିହିତ ଅଟନ୍ତି । ସୁଭଦ୍ରା ଭଗିନୀ ଭଗବାନଙ୍କର ଶକ୍ତିରୂପିଣୀ ଅଟନ୍ତି । ସେ ଶ୍ରୀପ୍ରଦାୟିନୀ ମଧ୍ୟ ଅଟନ୍ତି । ସୁଦର୍ଶନ ନାମକ ଚକ୍ର ଉଲ୍ଲିଖିତ ଶାଖାର ଅଗ୍ରଭାଗର ମଧ୍ୟରେ ରହି ବିଷ୍ଣୁଙ୍କର ହସ୍ତରେ ବିରାଜମାନ । ଯେ ବିଷ୍ଣୁଙ୍କର ଚତୁର୍ଥ ରୂପ[12] । ଏସ୍ଥଳେ ବିଶେଷ ଭାବରେ ଲକ୍ଷ୍ୟ କରିବାର କଥା ଏହି ଯେ ସ୍କନ୍ଦପୁରାଣର ପୁରୁଷୋତ୍ତମ-ମାହାତ୍ମ୍ୟ, ଭଗବାନଙ୍କର ଚତୁର୍ଦ୍ଧା-ମୂର୍ତ୍ତିର ଦୁଇଗୋଟି ରୂପ ପ୍ରଦାନ କରିଅଛି-ପ୍ରଥମତଃ ତାଙ୍କର ତାତ୍ତ୍ୱିକ ରୂପ ଓ ଦ୍ୱିତୀୟତଃ ପୌରାଣିକୀ କଥା ଅବଲମ୍ବନରେ ଲୌକିକ ରୂପ । ସ୍କନ୍ଦପୁରାଣ ଉତ୍କଳଖଣ୍ଡରେ ଶ୍ରୀପୁରୁଷୋତ୍ତମ-ମାହାତ୍ମ୍ୟର ବର୍ଣ୍ଣନା ଅବଶ୍ୟ ବ୍ୟାପକ । ତହିଁରେ ଚତୁର୍ଦ୍ଧାମୂର୍ତ୍ତିର ଅନ୍ୟାନ୍ୟ ବିବରଣୀ ମଧ୍ୟ ପ୍ରଦତ୍ତ ହୋଇଅଛି ।

ପୂର୍ବୋକ୍ତ ପ୍ରକାରେ ଚତୁର୍ଦ୍ଧାମୂର୍ତ୍ତିର ନିର୍ମାଣ ହେବା ଉତ୍ତାରୁ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କୁ ପୁନରାୟ ଆକାଶବାଣୀ ଦ୍ୱାରା ନିର୍ଦ୍ଦେଶ ଆସିଥିଲା—ଏହି ପ୍ରତିମା ଗୁଡ଼ିକୁ ଦୃଢ଼ଭାବରେ ପଟ୍ଟବସ୍ତ୍ର ଦ୍ୱାରା ଆଚ୍ଛାଦିତ କରି ଚିତ୍ରକାର ମାନଙ୍କ ଦ୍ୱାରା ନିଜନିଜ ବର୍ଣ୍ଣରେ ରଞ୍ଜିତ କରିବାକୁ ହେବ । ବିଷ୍ଣୁ ନୀଳମେଘ ପରି ଶ୍ୟାମଳ, ବଳଭଦ୍ର ଶଙ୍ଖ ବା ଚନ୍ଦ୍ର ପରି ଧବଳ, ସୁଦର୍ଶନ ଚକ୍ର ରକ୍ତବର୍ଣ୍ଣ ତଥା ସୁଭଦ୍ରା କୁଙ୍କୁମାରୁଣ ହେବେ । ପ୍ରତିମା ମାନେ ନାନା ଆଭରଣ ପରିଧାନ କରିଥିବେ ଓ ନାନାଭଙ୍ଗୀରେ ରହିଥିବେ । କାରଣ ପ୍ରତିମାମାନଙ୍କୁ ଦାରୁ ସ୍ୱରୂପରେ ଦର୍ଶନ କଲେ ପାପହୁଏ ତଥା ନର୍କବାସ ମିଳେ ।

ଆକାଶବାଣୀ ଉତ୍ତାରୁ ମହାବେଦୀର ବେଷ୍ଟନ ଉନ୍ମୋଚନ କରିବା-ପରେ ଉପସ୍ଥିତ ଜନତା ଯେଉଁ ଚତୁର୍ଦ୍ଧା ବିଭକ୍ତ ବିଗ୍ରହଙ୍କୁ ଦର୍ଶନ କଲେ, ତାହାର ବର୍ଣ୍ଣନା ସ୍କନ୍ଦପୁରାଣରେ ଏହିପରି ପ୍ରଦତ୍ତ ହୋଇଅଛି—ରାମ, କୃଷ୍ଣ, ସୁଭଦ୍ରା ତଥା ବାସୁଦେବ-ସୁଦର୍ଶନ ରତ୍ନସିଂହାସନ ଉପରେ ବିରାଜିତ ହୋଇଛନ୍ତି । ଲେପ ପ୍ରଭୃତି ସଂସ୍କାର ଦ୍ୱାରା ସେମାନଙ୍କର ଆକୃତି ରୁଚିର ହୋଇଅଛି । ଶ୍ରୀକୃଷ୍ଣଙ୍କର ମୁଖ କରୁଣାରେ ସ୍ମିତହାସ୍ୟଯୁକ୍ତ, ବକ୍ଷସ୍ଥଳ ଉନ୍ନତ ଓ ଭୁଜପଞ୍ଜର ଦୀନ ଦୁଃଖୀଙ୍କୁ ଉଦ୍ଧାର କରିବା ପାଇଁ ପ୍ରଲମ୍ବ ବା ଲମ୍ବମାନ । ତାଙ୍କର ନୟନ ଯୁଗଳ ପ୍ରଫୁଲ୍ଲ ଶ୍ୱେତପଦ୍ମପରି

ହୋଇଛି । ହାସ୍ୟ ଦ୍ୱାରା ତାଙ୍କର ଅଧର ରକ୍ତ ବର୍ଣ୍ଣ ଧାରଣ କରିଅଛି । ସେ ପଦ୍ମାସନରେ ସ୍ଥିତ ହୋଇ ଦିବ୍ୟାଳଙ୍କାର ଭୂଷିତ ହୋଇଛନ୍ତି । ତାଙ୍କର ଦେହ-ଶୋଭା ନୀଳମେଘ ପରି ଦେଖାଯାଉଛି । ବଳଦେବଙ୍କର ମୁଖପଦ୍ମ ଅଟହାସଯୁକ୍ତ ଓ ଫଣା-ମଣ୍ଡଳ ଦ୍ୱାରା ବିସ୍ତୀର୍ଣ୍ଣ, ଚକ୍ଷୁ ବାରୁଣୀ ଦ୍ୱାରା ଘୂର୍ଣ୍ଣିତ । ବକ୍ଷସ୍ଥଳ ପୀନ ଓ ଉନ୍ନତ ହୋଇଅଛି । ସେ ଉତ୍ଥିତ ନାଗରାଜ ପରି ଦୃଶ୍ୟମାନ ହେଉଛନ୍ତି । ତାଙ୍କର ପୃଷ୍ଠ ଦେଶ କିଞ୍ଚିତ୍ ଅବନତ ହୋଇଛି ଓ ଦେହର ଅପର ଭାଗ କୁଣ୍ଡଳୀକୃତ ହୋଇଅଛି । ସେ ତାଙ୍କର ଭୁଜରେ ହଳ, ଚକ୍ର, ପଦ୍ମ ଓ ମୂଷଳ ଓ ଗଳାରେ ବନମାଳା ଧାରଣ କରିଛନ୍ତି । ତାଙ୍କର ଶରୀରରେ ହାର, କୁଣ୍ଡଳ, କେୟୂର, କିରୀଟ, ମୁକୁଟ ପ୍ରଭୃତି ରହି ଉଜ୍ଜ୍ୱଳ ଦେଖାଯାଉଛି । ଏହି ଉଭୟ ଦେବତାଙ୍କ ମଧ୍ୟ ଭାଗରେ ଲକ୍ଷ୍ମୀ ରୂପିଣୀ ସୁଭଦ୍ରା ରହିଛନ୍ତି । ତାଙ୍କର ମୁଖ ବିକଶିତ ପଦ୍ମପରି, ହସ୍ତରେ ବରପଦ୍ମ ଓ ଅଭୟମୁଦ୍ରାଧାରଣ କରିଛନ୍ତି । ତାଙ୍କର ଶରୀର କୁଙ୍କୁମ ପରି ଅରୁଣବର୍ଣ୍ଣ ହୋଇଅଛି । ଶାଖାଗ୍ରନିର୍ମିତ ଚକ୍ର ବାଳସୂର୍ଯ୍ୟଙ୍କ ପରି ତୀକ୍ଷ୍ଣଧାର ଓ ତେଜୋମୟ ହୋଇଅଛି[13] ।

ଉପର୍ଯ୍ୟୁକ୍ତ ପୁରାଣୋକ୍ତି ଗୁଡ଼ିକୁ ପର୍ଯ୍ୟାଲୋଚନା କଲେ ଜଣାଯାଏ ଯେ ମୂଳ ବ୍ରହ୍ମ ପୁରାଣ ତଥା ପଦ୍ମ ପୁରାଣ ରଚିତ ହେବାସମୟକୁ ଶ୍ରୀନୀଳାଚଳ-ଠାରେ ଏକକ ବିଷ୍ଣୁ ପ୍ରତିମା ହିଁ ପୂଜିତ ହେଉଥିଲେ । ମତ୍ସ୍ୟପୁରାଣ, ଅଗ୍ନି ପୁରାଣ ପ୍ରଭୃତିରେ ବର୍ଣ୍ଣିତ ଶ୍ରୀବିଷ୍ଣୁଙ୍କର ବିଗ୍ରହ ଠାରୁ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ କୌଣସି ପ୍ରକାରେ ଭିନ୍ନ ନଥିଲା । ଅବଶ୍ୟ ପୁରାଣମାନଙ୍କରେ ଶ୍ରୀବିଷ୍ଣୁଙ୍କର ବିଗ୍ରହ ଠାରୁ ଶ୍ରୀକୃଷ୍ଣାବତାରର ବିଗ୍ରହକୁ ପାର୍ଥକ୍ୟ ରୂପରେ ଦର୍ଶାଯାଇଛି । ଉଭୟ ବିଧି ବିଗ୍ରହରେ ପ୍ରଭେଦ ସାମାନ୍ୟ ମାତ୍ର । ଶ୍ରୀପୁରୁଷୋତ୍ତମଙ୍କ ସ୍ୱରୂପ ଶ୍ରୀକୃଷ୍ଣାବତାରର ସ୍ୱରୂପ ସହିତ ସମାନ ହିଁ ଥିଲା । ତତ୍ପରେ ନାରଦପୁରାଣ ଓ ସ୍କନ୍ଦପୁରାଣ ବେଳକୁ ଶ୍ରୀପୁରୁଷୋତ୍ତମଙ୍କର ଚତୁର୍ଦ୍ଧା ବିଗ୍ରହ ପ୍ରକାଶିତ ହେଲା । ଶ୍ରୀଭଗବାନଙ୍କର ଚତୁର୍ଦ୍ଧା ବିଗ୍ରହ ଅଦ୍ୟାବଧି ଶ୍ରୀନୀଳାଚଳ କ୍ଷେତ୍ରରେ ପୂଜିତ ହୁଅନ୍ତି । ହେଲେ ନାରଦପୁରାଣ ଓ ସ୍କନ୍ଦ ପୁରାଣର ବିଗ୍ରହ, ବର୍ତ୍ତମାନର ବିଗ୍ରହ ପରି ଅସଂପୂର୍ଣ୍ଣ ମନୁଷ୍ୟାକୃତି ନୁହେଁ । ତହିଁରେ ଶ୍ରୀବିଷ୍ଣୁ ବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ବିଗ୍ରହ ପୂର୍ଣ୍ଣା-ବୟବ । ସ୍କନ୍ଦ ପୁରାଣର ଉକ୍ତି ଅନୁସାରେ ସ୍ୱୟଂ ଭଗବାନ୍ ବର୍ଦ୍ଧକି ବେଶରେ ଉପସ୍ଥିତ ହୋଇ ମହାବେଦିରେ ପୂର୍ବ-ନିର୍ଦ୍ଧାରିତ ପନ୍ଦର ଦିନରେ ଏହି ସମସ୍ତ ମୂର୍ତ୍ତି ନିର୍ମାଣ କରି ଅଛନ୍ତି[14] । ଉତ୍ତରକାଳୀନ ଉତ୍କଳୀୟ କବିମାନେ ହିଁ ନିର୍ଦ୍ଧାରିତ ଦିବସ ଏକୋଇଶ ଦିନ ଥିବା, ପନ୍ଦର ଦିନରେ ମହାରାଣୀଙ୍କ

ଆଦେଶରେ ଦ୍ୱାର ଉଦଘାଟନ କରିବାରେ ଶ୍ରୀବିଗ୍ରହ ତ୍ରୟ ଅର୍ଦ୍ଧନିର୍ମିତ ହୋଇ ରହିବା ଓ ଭଗବତ୍‌-ବାଣୀ ଅନୁସାରେ ସେହି ରୂପରେ ପୂଜା ପାଇବା ବିଷୟକୁ କଳ୍ପନା କରିଅଛନ୍ତି ।

ଏ ପ୍ରସଙ୍ଗଟିକୁ ସୂତସଂହିତା ଅନ୍ତର୍ଗତ ନୀଳାଦ୍ରି ମହୋଦୟ ଅନ୍ୟଭାବରେ ଉପସ୍ଥାପନା କରିଅଛି । ନୀଳାଦ୍ରି ମହୋଦୟ ଅନୁସାରେ ମଧ୍ୟ ବୃଦ୍ଧ ବର୍ଦ୍ଧକୀରୂପୀ ଭଗବାନ ପନ୍ଦରଦିନ ପର୍ଯ୍ୟନ୍ତ ଅବରୁଦ୍ଧ ଭାବରେ ମହାବେଦୀ ମଧ୍ୟରେ ରହି ବିଗ୍ରହ ନିର୍ମାଣ କରିବାର ନିର୍ଦ୍ଧାରଣ ହୋଇଥିଲା ଓ ଯଥା କାଳରେ ଅର୍ଥାତ୍‌ ପନ୍ଦରଦିନ ପରେ ହିଁ ଦ୍ୱାର ଉନ୍ମୋଚିତ ହୋଇଥିଲା । ସେହି କାଳରେ ଯେଉଁ ବିଗ୍ରହ ନିର୍ମିତ ହୋଇଥିବାର ଦୃଶ୍ୟମାନ ହୋଇଥିଲା, ତହିଁରେ ତାହାର ବର୍ଣ୍ଣନା ଏହିପରି—ଶ୍ରୀଭଗବାନ (ଜନାର୍ଦ୍ଦନ) ବଳଭଦ୍ର, ସୁଭଦ୍ରା, ସୁଦର୍ଶନ, ବିଶ୍ୱଧାତ୍ରୀ ଲକ୍ଷ୍ମୀ ଓ ମାଧବଙ୍କ ସହିତ ସପ୍ତରୂପରେ ରତ୍ନସିଂହାସନ ଉପରେ ଆବିର୍ଭୂତ ହୋଇଥିଲେ । ସେ ପଦ୍ମାସନ ଉପରେ ପ୍ରତିଷ୍ଠିତ ହୋଇଥିଲେ । ତାଙ୍କର ଦୁଇ ଭୁଜକୁ ଉତ୍ତୋଳିତ କରିଥିଲେ ଓ ତାଙ୍କର ପାଦ ତଥା ପାଣି ପଙ୍କଜ (ହସ୍ତ)କୁ ଗୁପ୍ତ ପରି ଦେଖାଉଥିଲେ । ତାହାଙ୍କର ବର୍ଣ୍ଣ ନୀଳମେଘ ପରି ଥିଲା ଓ ଅଧର ରକ୍ତବର୍ଣ୍ଣ ଥିଲା । ସେହିପରି ବଳଭଦ୍ର ମଧ୍ୟ କୁନ୍ଦପୁଷ୍ପ ଓ ଚନ୍ଦ୍ରପରି ଧବଳବର୍ଣ୍ଣ ଥିଲେ । ତାଙ୍କର ମସ୍ତକ ସାତଗୋଟି ଫଣାଦ୍ୱାରା ବିକଟ ଦେଖାଯାଉଥିଲା । ଚକ୍ଷୁ ପ୍ରସ୍ଫୁଟିତ ପଦ୍ମପୁଷ୍ପ ପରି ଦୃଶ୍ୟମାନ ହେଉଥିଲା । ସେ ମଧ୍ୟ ତାଙ୍କର ଦୁଇଭୁଜକୁ ଉତ୍ତୋଳିତ କରିଥିଲେ ଓ ନିଜର ପାଦ ତଥା ପାଣିକୁ ଗୁପ୍ତ କରିଥିଲେ । ସୁଭଦ୍ରାଙ୍କର ବର୍ଣ୍ଣ କୁଙ୍କୁମପରି ଓ ମୁଖ ଅତି ସୁନ୍ଦରଥିଲା । ତାଙ୍କର ହସ୍ତ ତଳକୁ ଲମ୍ବିଥିଲା । ସୁଦର୍ଶନ ସ୍ତମ୍ଭରୂପୀ ହୋଇଥିଲେ । ମାଧବ କ୍ଷୁଦ୍ରାକୃତି ହୋଇ ପ୍ରଭୁଙ୍କର ସ୍ୱରୂପ ହିଁ ପ୍ରାପ୍ତ ହୋଇଥିଲେ[15] । ଅତଏବ ନୀଳାଦ୍ରୀ ମହୋଦୟର ରଚନା ବେଳକୁ ଶ୍ରୀବିଗ୍ରହ-ଚତୁଷ୍ଟୟଙ୍କର ସ୍କନ୍ଦ ପୁରାଣୋକ୍ତ ରୂପ ପରିତ୍ୟକ୍ତ ହୋଇ ବର୍ତ୍ତମାନର ସ୍ୱରୂପ ପ୍ରାପ୍ତି ଘଟିଥିବାର ପ୍ରତିପାଦିତ ହୁଏ । ଏହି ପରିବର୍ତ୍ତନର କାରଣ ସଂପର୍କରେ ପୁରାଣକାରମାନେ ନୀରବ ।

କପିଳ-ସଂହିତାରେ କଥିତ ହୋଇଛି ଯେ, ବିଶ୍ୱକର୍ମା ଯେଉଁ ଅଦ୍ୱିତୀୟ ଚାରିଗୋଟି ବିଗ୍ରହ ନିର୍ମାଣ କରିଥିଲେ, ତହିଁରେ ହରି (ନାରାୟଣ ବା ବିଷ୍ଣୁ) ଶଙ୍ଖ ଓ ଚକ୍ର ଧାରଣ କରିଥିଲେ । ବନମାଳା ଓ ପୀତ ବସ୍ତ୍ର ପରିଧାନ କରିଥିଲେ, ବଳଭଦ୍ର ଗଦା ଓ ହଳଧାରଣ କରିଥିଲେ ଓ ତାଙ୍କର ମସ୍ତକ ଫଣା

ଦ୍ୱାରା ବିକଟ ଦେଖାଯାଉଥିଲା । ସୁଭଦ୍ରା ପଦ୍ମହସ୍ତା ହୋଇଥିଲେ ଓ ସୁଦର୍ଶନ ସ୍ତମ୍ଭ ରୂପୀଥିଲେ।[୨୦] । ଅବଶ୍ୟ ଏହାର ସଂକ୍ଷିପ୍ତ ବର୍ଣ୍ଣନାରୁ ତିନି ମୁଖ୍ୟ ଦେବ ବିଗ୍ରହ କେଉଁ ରୂପରେ ନିର୍ମିତ ହୋଇଥିଲେ, ନିର୍ଦ୍ଧାରଣ କରି କହିବା କଠିନ । ତଥାପି ସେମାନେ ପ୍ରତ୍ୟେକ, ଯେ ଦ୍ୱିବାହୁ-ବିଶିଷ୍ଟଥିଲେ ଓ ନିଜନିଜର ଆୟୁଧ ଧାରଣ କରିଥିଲେ, ଏପରି ଅନୁମାନ କରଯାଇପାରେ । ସମ୍ଭବତଃ କପିଳ ସଂହିତା ରଚିତ ହେବା ବେଳକୁ ଶ୍ରୀବିଗ୍ରହ ମାନଙ୍କର ପାଦଭାଗ ନିର୍ମାଣ କରିବାର ପରମ୍ପରା ଭଗ୍ନ ହୋଇଥିଲା, କିନ୍ତୁ ଶରୀରର ଉର୍ଦ୍ଧ୍ୱଭାଗରେ ଯଥାପ୍ରକାରେ ହସ୍ତରେ ଆୟୁଧ ଧାରଣ କରିଥିବା ଶୈଳୀର ହିଁ ବିଗ୍ରହମାନ ନିର୍ମିତ ହୋଇଥିଲେ, ନଚେତ ଆୟୁଧ ଗୁଡ଼ିକର ବର୍ଣ୍ଣନା ହୋଇ ନଥାନ୍ତା ।

ବ୍ରହ୍ମ, ନାରଦ ଓ ସ୍କନ୍ଦପୁରାଣର ଉତ୍କଳ ଖଣ୍ଡରେ ଶ୍ରୀନୀଳାଚଳରେ ଅଧିଷ୍ଠିତ ଦେବତାମାନଙ୍କର ଯେଉଁ ବିଗ୍ରହ ସ୍ୱରୂପ ପ୍ରଦର୍ଶିତ ହୋଇଅଛି, ତାହାଅନନ୍ତ-ବାସୁଦେବ ଏକାନଂଶା ବିଗ୍ରହ ହିଁ ଅଟେ । ବରାହ ମିହିର ତାଙ୍କର ବୃହତ୍ ସଂହିତା ନାମକ ଗ୍ରନ୍ଥରେ ଏହି ବିଗ୍ରହ ସମୂହର ସ୍ୱରୂପ ପ୍ରଦାନ କରିଛନ୍ତି । ପ୍ରଥମତଃ ବିଷ୍ଣୁଙ୍କର ପ୍ରତିମା ଅଷ୍ଟଭୁଜ, ଚତୁର୍ଭୁଜ ବା ଦ୍ୱିଭୁଜ ହେବ । ତାଙ୍କର ବକ୍ଷଃସ୍ଥଳରେ ଶ୍ରୀବତ୍ସ ଚିହ୍ନ ଅଙ୍କିତ ହେବ ଓ ତାହା କୌସ୍ତୁଭ ମଣିଦ୍ୱାରା ଶୋଭିତ ହେବ । ଅତସୀ ପୁଷ୍ପପରି ଶ୍ୟାମବର୍ଣ୍ଣ, ପୀତାମ୍ବର-ପରିଧାନ, ପ୍ରସନ୍ନ ମୁଖ, ପୁଷ୍ଟ କଣ୍ଠ, ବକ୍ଷ, ସ୍କନ୍ଦ ତଥା ଭୁଜଯୁକ୍ତ ହେବ । ଅଷ୍ଟଭୁଜ ପ୍ରତିମା ନିର୍ମିତ ହେଲେ ସେ ଦକ୍ଷିଣର ତିନି ଭୁଜରେ ଖଡ୍ଗ, ଗଦା ଓ ଶର ଧାରଣ କରିବେ ଓ ଚତୁର୍ଥ ଭୁଜ ଅଭୟ ମୁଦ୍ରାରେ ରହିବ । ବାମପାର୍ଶ୍ୱର ଚାରିଭୁଜରେ ସେ ଧନୁ, ଢାଲ, ଚକ୍ର ଓ ଶଙ୍ଖ ଧାରଣ କରିବେ । ଚତୁର୍ଭୁଜ ପ୍ରତିମା ନିର୍ମିତ ହେବାକୁ ଥିଲେ ଭଗବାନ ଦକ୍ଷିଣ ପାର୍ଶ୍ୱରେ ଏକ ହସ୍ତରେ ଅଭୟ ମୁଦ୍ରା ଓ ଅନ୍ୟଟିରେ ଗଦା ଏବଂ ବାମପାର୍ଶ୍ୱରେ ଏକ ହସ୍ତରେ ଶଙ୍ଖ ଓ ଦ୍ୱିତୀୟରେ ଚକ୍ର ଧାରଣ କରିବେ । ଦ୍ୱିଭୁଜ ବିଷ୍ଣୁ ପ୍ରତିମା ନିର୍ମାଣ କରାଯିବା ଅବସରରେ ସେ ଦକ୍ଷିଣ ହସ୍ତରେ ଅଭୟମୁଦ୍ରା ଓ ବାମହସ୍ତରେ ଶଙ୍ଖ ଧାରଣ କରିବେ । ବଳଦେବଙ୍କ ପ୍ରତିମାରେ ସେ ତାଙ୍କର ଏକ ହସ୍ତରେ ହଳ ଧାରଣ କରିବେ, ତାଙ୍କର ଚକ୍ଷୁ ମଦ-ବିଭ୍ରମଯୁକ୍ତ ହୋଇଥିବ, ତାଙ୍କର ଏକ କର୍ଣ୍ଣରେ କୁଣ୍ଡଳ ଧାରଣ କରାଯାଇଥିବ ଓ ଶଙ୍ଖ, ଚନ୍ଦ୍ର ବା ମୃଣାଳ ପରି ତାଙ୍କର ଶରୀର-ବର୍ଣ୍ଣଧବଳ ହୋଇଥିବ । ବଳଦେବ ଓ କୃଷ୍ଣଙ୍କର ମଧ୍ୟଭାଗରେ ଏକାନଂଶା ଦେବୀଙ୍କର ମୂର୍ତ୍ତି ନିର୍ମାଣ କରିବାକୁ ହେବ । ତାଙ୍କର ବାମହସ୍ତ କଟି ଦେଶରେ ଅବସ୍ଥାପିତ ଥିବ ଓ ସେ ଦକ୍ଷିଣ ହସ୍ତରେ ଗୋଟିଏ ପଦ୍ମପୁଷ୍ପ ଧାରଣ କରିଥିବେ । ଏକାନଂଶା ଦେବୀ

ଚତୁର୍ଭୁଜା ହେଲେ ତାଙ୍କର ବାମପାର୍ଶ୍ୱର ଏକ ହସ୍ତରେ ପୁସ୍ତକ ତଥା ଦ୍ୱିତୀୟରେ ପଦ୍ମ ଏବଂ ଦକ୍ଷିଣ ପାର୍ଶ୍ୱର ଏକ ହସ୍ତରେ ବରଦ ମୁଦ୍ରା ତଥା ଅନ୍ୟଟିରେ ମାଳାଧାରଣ କରିବାକୁ ହେବ । ଅଷ୍ଟଭୁଜା ଏକାନଂଶା ଦେବୀଙ୍କର ମୂର୍ତ୍ତିରେ ବାମ ପାର୍ଶ୍ୱର ଚାରି ଭୁଜରେ କ୍ରମଶଃ କମଣ୍ଡଳୁ, ଧନୁ, ପଦ୍ମ ଓ ପୁସ୍ତକ ଏବଂ ଦକ୍ଷିଣର ଚାରି ହସ୍ତରେ କ୍ରମଶଃ ବରଦମୁଦ୍ରା, ବାଣ, ଦର୍ପଣ ଓ ଅକ୍ଷସୂତ୍ର ଧାରଣ କରିଥିବେ[17] ।

ବୃହଦ୍ ସଂହିତାର ଏକାନଂଶା ରୂପିଣୀ ଦେବୀ କୃଷ୍ଣ ଓ ବଳରାମଙ୍କର ଭଗିନୀ ଦୁର୍ଗା ହିଁ ଅଟନ୍ତି । ଦୁର୍ଗା ସପ୍ତଶତୀର ପ୍ରସିଦ୍ଧ ନାରାୟଣୀ-ସ୍ତୋତ୍ରରେ ଦେବୀ ନନ୍ଦଗୋପ ଗୃହରେ, ଯଶୋଦା ଦେବୀଙ୍କ ଗର୍ଭରୁ ସମ୍ଭୂତ ହୋଇ ବିନ୍ଧ୍ୟାଚଳରେ ବାସ କରି ଶୁମ୍ଭ ଓ ନିଶୁମ୍ଭ ନାମକ ଦୁଇ ଅସୁରଙ୍କୁ ନାଶ କରିବାପାଇଁ ଦେବତାମାନଙ୍କୁ ପ୍ରତିଶ୍ରୁତି ଦେଇଛନ୍ତି[18] । ହରିବଂଶ ପୁରାଣରେ ଉଲ୍ଲେଖ ଅଛି ଯେ ଦେବୀ ସୁଭଦ୍ରା ଯଶୋଦାଙ୍କ ଗର୍ଭରୁ ଜନ୍ମଗ୍ରହଣ କରି ଦାନବରାଜ କଂସର ଅତ୍ୟାଚାରରୁ ନିଜ ଭ୍ରାତୃଦ୍ୱୟ ଶ୍ରୀକୃଷ୍ଣ ଓ ବଳରାମଙ୍କୁ ରକ୍ଷା କରିଥିବାରୁ ଶ୍ରୀକୃଷ୍ଣଙ୍କ ଦ୍ୱାରା ବରପ୍ରାପ୍ତ ହୋଇ ଏକାନଂଶା ରୂପରେ ଶ୍ରୀକୃଷ୍ଣଙ୍କ ସହିତ ଉପାସ୍ୟା ହୋଇଛନ୍ତି । ବିଷ୍ଣୁ ଧର୍ମୋତ୍ତର ପୁରାଣରେ ମଧ୍ୟ ଦେବୀ ସୁଭଦ୍ରା ଏକାନଂଶା ରୂପରେ ଶ୍ରୀକୃଷ୍ଣ ଓ ବଳରାମଙ୍କ ମଧ୍ୟରେ ପୂଜିତା ଅଟନ୍ତି । ଏହିପରି ଭଗବାନ୍ ଶ୍ରୀକୃଷ୍ଣାବତାରଧାରୀ ନାରାୟଣ ନିଜର ଭ୍ରାତା ଓ ଭଗିନୀଙ୍କ ସହିତ ଉପାସ୍ୟ ହୋଇଥିବାର ଅନେକ ବିବରଣୀ ପୁରାଣମାନଙ୍କରେ ପ୍ରାପ୍ତ ହୁଏ ଓ ଭଗିନୀ ସୁଭଦ୍ରା ଏକାନଂଶା ରୂପରେ ଉପାସ୍ୟା ହୋଇଥିବାର କଥିତ ହୁଏ ।

ବୃହଦ୍ ସଂହିତାର ବିଷ୍ଣୁ ପ୍ରତିମା ମତ୍ସ୍ୟପୁରାଣର ପ୍ରତିମା ସହିତ ପ୍ରାୟ ସମାନ । କିନ୍ତୁ ମତ୍ସ୍ୟ-ପୁରାଣରେ ବଳଭଦ୍ର ଓ ଏକାନଂଶାଙ୍କର ମୂର୍ତ୍ତି ନିର୍ମାଣର ବିବରଣୀ ନାହିଁ । ଉତ୍କଳରେ ବିଭିନ୍ନ ସ୍ଥାନରେ କୃଷ୍ଣ-ବଳରାମ ଓ ଏକାନଂଶାଙ୍କର ମୂର୍ତ୍ତି ପ୍ରାପ୍ତ ହୁଏ । ଭୁବନେଶ୍ୱରସ୍ଥ ଲିଙ୍ଗରାଜ ମନ୍ଦିରର ପ୍ରାଙ୍ଗଣରେ ଏକ କ୍ଷୁଦ୍ର ମନ୍ଦିର ମଧ୍ୟରେ ଅନନ୍ତ ବାସୁଦେବ-ଏକାନଂଶାଙ୍କର ମୂର୍ତ୍ତି ଅଦ୍ୟାବଧି ପୂଜିତ ହେଉ ଅଛନ୍ତି । ଖ୍ରୀଷ୍ଟୀୟ ଏକାଦଶ ଶତାବ୍ଦୀର ବଳଦେବ-ଏକାନଂଶା-କୃଷ୍ଣଙ୍କର ଏକ ବ୍ରୋଞ୍ଜ ନିର୍ମିତ ସୁନ୍ଦର ମୂର୍ତ୍ତି ବିହାର ପ୍ରଦେଶର ଇମାଦପୁର ଗ୍ରାମଠାରୁ ଆବିଷ୍କୃତ ହୋଇ ଅଧୁନା ଲଣ୍ଡନର ସାରଥ କିଙ୍ଗଷ୍ଟନ ସଂଗ୍ରହାଳୟରେ

ସଂରକ୍ଷିତ ହୋଇଅଛି ବୋଲି ଡକ୍ଟର ଜିତେନ୍ଦ୍ର ନାଥ ବାନାର୍ଜି ପ୍ରକାଶ କରିଛନ୍ତି ।

ସ୍କନ୍ଦପୁରାଣର ଉତ୍କଳ ଖଣ୍ଡରେ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ପ୍ରତିଷ୍ଠିତ ଦାରୁ ବିଗ୍ରହ ପୂର୍ବରୁ ସେହି ନୀଳ ପର୍ବତ ଠାରେ ଶବରମାନଙ୍କ ଦ୍ୱାରା ପୂଜିତ ହୋଇଥିବା ନୀଳମାଧବ ବିଗ୍ରହର ବିବରଣୀ ପ୍ରାପ୍ତ ହୁଏ । ତାହା ନୀଳମଣି ବା ନୀଳପ୍ରସ୍ତର ନିର୍ମିତ ଥିଲା । ଶବର ରାଜା ବିଶ୍ୱାବସୁଙ୍କ ଦ୍ୱାରା ପୂଜିତ ହୋଇଥିବା ନୀଳମାଧବଙ୍କୁ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କର ପୁରୋହିତର କନିଷ୍ଠଭ୍ରାତା ବିଦ୍ୟାପତି ଯେଉଁ ପ୍ରକାରେ ଦର୍ଶନ କରି ଇନ୍ଦ୍ରଦ୍ୟୁମ୍ନଙ୍କ ସମ୍ମୁଖରେ ବର୍ଣ୍ଣନା କରିଥିଲେ । ତାହା ଅନୁସାରେ ଏହି ଚକ୍ର ଗଦାଧରଙ୍କ ବିଗ୍ରହ ଇନ୍ଦ୍ରନୀଳମୟ, ପରିମାଣ ଏକାଶୀ ଅଙ୍ଗୁଳି । ସେ ସ୍ୱର୍ଣ୍ଣପଦ୍ମ ଉପରେ ଅବସ୍ଥିତ । ତାଙ୍କର ଲଲାଟ-ସୌନ୍ଦର୍ଯ୍ୟ ଅଷ୍ଟମୀ ଚନ୍ଦ୍ର ଶୋଭାଠାରୁ ଅଧିକ, ନୟନ ଯୁଗଳ ବିକଶିତ ପଦ୍ମପୁଷ୍ପ-ତୁଲ୍ୟ ତଥା ନାସିକା ତିଳପୁଷ୍ପ ପରି ସୁନ୍ଦର । ତାଙ୍କର ଅଧର ସୁନ୍ଦର ସ୍ମିତହାସ୍ୟ-ଯୁକ୍ତ, ଗଣ୍ଡଦ୍ୱୟ ହର୍ଷୋତ୍‌ଫୁଲ୍ଲ, ଚିବୁକ ଓ ହନୁ ଅତି ମନୋହର, ଓଷ୍ଠର ଦୁଇ ପ୍ରାନ୍ତ ଭାଗର ଗଠନ ଅତିଅପୂର୍ବ, ଗଣ୍ଡ ଦ୍ୱୟର ନିମ୍ନଭାଗ ହାସ୍ୟ ଯୋଗେ ନିମ୍ନକୁ ପ୍ରସାରିତ ହୋଇଅଛି, ତାଙ୍କର ଚାରିବାହୁ ଆଜାନୁଲମ୍ବିତ, ସ୍କନ୍ଧଯୁଗଳ ଅତି ପୀନ ଓ ଆୟତ, ତାଙ୍କର ଗଭୀର ନାଭିହ୍ରଦରେ ସୂକ୍ଷ୍ମ ରୋମାବଳି ଶୋଭମାନ, ତାଙ୍କର ମନୋହର ଜାନୁଯୁଗଳ ସ୍ତମ୍ଭପରି ସୁନ୍ଦର । ସେ ତାଙ୍କର ଚାରିଭୁଜରେ ଶଙ୍ଖ, ଚକ୍ର, ଗଦା ଓ ପଦ୍ମ ଧାରଣ କରିଛନ୍ତି । ତାଙ୍କର ଦୁଇ କର୍ଣ୍ଣରେ ମକର ମୁଖାକୃତି କୁଣ୍ଡଳ, କଣ୍ଠ ଦେଶରେ ଗ୍ରୈବେୟକ ବା କଣ୍ଠହାର, ବକ୍ଷସ୍ଥଳରେ ସ୍ୱଚ୍ଛ ଓ ନିର୍ମଳ ହାର, ଗଳାରେ କୌସ୍ତୁଭମଣି, ନିତମ୍ବଦେଶରେ ମୁକ୍ତା ନିର୍ମିତ କିଙ୍କିଣିମାଳା, କଟିରେ ପୀତବସନ, ଜାନୁରେ ପାଦ ପର୍ଯ୍ୟନ୍ତ ଲମ୍ବିଥିବା ମାଲ୍ୟ ଓ ରତ୍ନ ବଳୟ, ହସ୍ତରେ କଙ୍କଣ, ମସ୍ତକରେ ମୁକୁଟ ପରିହିତ ହୋଇଅଛି । ତାଙ୍କର ବାମପାର୍ଶ୍ୱରେ ଲକ୍ଷ୍ମୀଦେବୀ ଦଣ୍ଡାୟମାନ ଅଛନ୍ତି ଓ ଭଗବାନ ବାମହସ୍ତରେ ତାଙ୍କୁ ଆଲିଙ୍ଗନ କରୁଛନ୍ତି । ଲକ୍ଷ୍ମୀ ଦେବୀ ମଧ୍ୟ ଅନେକ ଅଳଙ୍କାର ଭୂଷିତା ହୋଇ ବୀଣାବାଦନ କରୁଛନ୍ତି । ଭଗବାନଙ୍କର ପଶ୍ଚାଦ୍‌ଭାଗରେ ଅନନ୍ତ ନାଗ ନିଜର ଫଣାଗୁଡିକୁ ଛତ୍ରାକାର କରି ଧାରଣ କରିଅଛି ଓ ପ୍ରଚୁର କୁଣ୍ଡଳି ହୋଇ ଅବସ୍ଥିତ ହୋଇଅଛି[୧୭] ।

ଶ୍ରୀ ଭଗବାନଙ୍କର ଏହି ମାଧବ ରୂପ ଯୁଗଳ ମୂର୍ତ୍ତି । ତହିଁରେ

କେବଳ ଲକ୍ଷ୍ମୀ ଓ ନାରାୟଣ ବିଦ୍ୟମାନ । କିନ୍ତୁ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ନୂତନ ଦେବ ବିଗ୍ରହ ନିର୍ମିତ ହୋଇ ପ୍ରତିଷ୍ଠିତ ହେବା ପୂର୍ବରୁ ଇନ୍ଦ୍ରଦ୍ୟୁମ୍ନ-ନାରଦ ସଂବାଦରେ ନାରଦ ଅନେକ ସ୍ଥଳରେ ତତ୍‌କାଳୀନ ନୀଳମଣିମୟ ପ୍ରତିମାଙ୍କୁ ଚତୁର୍ଦେହସ୍ଥିତଃ ବୋଲି କହିଛନ୍ତି । କ୍ଷେତ୍ର-ନିର୍ମାଣ ଅବସରରେ ମଧ୍ୟ ମହାଦେବ, ବଳରାମ ଓ ଶ୍ରୀଦେବୀଙ୍କ ସହିତ ପୁରୁଷୋତ୍ତମଙ୍କୁ ସେଠାରେ ପୂଜା କରିଥିବାର ପ୍ରକାଶ କରିଛନ୍ତି[୧୦] । ସମ୍ଭବତଃ ପୁରାଣକାର ଏହି ସ୍ଥଳରେ ସାମାନ୍ୟ ବିଭ୍ରାନ୍ତ ହୋଇ ମହାରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଗଠିତ ଚତୁର୍ଦ୍ଧାମୂର୍ତ୍ତି ସ୍ୱରୂପର ଅବତାରଣା କରି ଦେଇଛନ୍ତି । ପୁଣି ସ୍ମରଣ ରଖିବାର କଥା ଏହି ଯେ ପୂର୍ବୋକ୍ତ ନୀଳମାଧବ ଶବରରାଜାଙ୍କ ଦ୍ୱାରା ଆରାଧିତ ହେଉଥିଲେ ଓ ନବନିର୍ମିତ ଚତୁର୍ଦ୍ଧାମୂର୍ତ୍ତି ଭଗବାନ ବ୍ରହ୍ମାଙ୍କ ଦ୍ୱାରା ବ୍ରହ୍ମଣ୍ୟାଧର୍ମାନୁସାରେ ହିଁ ପ୍ରତିଷ୍ଠିତ ହେଲେ । ପୁଣି ମହାରାଜ ଇନ୍ଦ୍ରଦ୍ୟୁମ୍ନ ଚତୁର୍ଦ୍ଧାମୂର୍ତ୍ତି ସଂପନ୍ନ ଭଗବାନ ପୁରୁଷୋତ୍ତମଙ୍କର ବିଗ୍ରହ ତଥା ମନ୍ଦିର ନିର୍ମାଣ କରି ତହିଁରେ ବିଗ୍ରହ ଚତୁଷ୍ଟୟଙ୍କୁ ପ୍ରତିଷ୍ଠା କରିବାକୁ ବ୍ରହ୍ମଲୋକକୁ ପିତାମହ ବ୍ରହ୍ମାଙ୍କୁ ଆମନ୍ତ୍ରଣ କରିବାକୁ ଯାଇଥିବା କାଳରେ ପୃଥ୍ୱୀଲୋକରେ ଏକ ମନ୍ୱନ୍ତର ବ୍ୟତୀତ ହୋଇଥିବା ଯୋଗେ ପରବର୍ତ୍ତୀ କାଳରେ ଉତ୍କଳରାଜ ଗାଳ, ସେହି ଶୂନ୍ୟମନ୍ଦିରରେ ଯେଉଁ ଦେବ ବିଗ୍ରହଙ୍କୁ ପ୍ରତିଷ୍ଠା କରିଥିଲେ ସେ ମାଧବ ବିଗ୍ରହ ହିଁ ଅଟନ୍ତି ।

ଓଡିଶାରେ ଗଙ୍ଗବଂଶ-ରାଜତ୍ୱ ପ୍ରତିଷ୍ଠାର ବହୁପୂର୍ବରୁ ମାଧବ-ଉପାସନା ମାଧ୍ୟମରେ ବୈଷ୍ଣବଧର୍ମ ପ୍ରଚଳିତ ଥିବାର ଐତିହାସିକମାନେ ପ୍ରକାଶ କରନ୍ତି । ବ୍ରହ୍ମାଣ୍ଡ ପୁରାଣ ଅନ୍ତର୍ଗତ ବିରଜା-ମାହାତ୍ମ୍ୟ ତଥା ପଦ୍ମପୁରାଣ ଅନ୍ତର୍ଗତ ପ୍ରାଚୀ ମାହାତ୍ମ୍ୟରେ ଯଥାକ୍ରମେ ବୈତରଣୀ ଓ ପ୍ରାଚୀନଦୀର ତୀରବର୍ତ୍ତୀ ଅଞ୍ଚଳରେ ଦ୍ୱାଦଶ ମାଧବ ପୂଜିତ ହେଉଥିବାର ଉଲ୍ଲେଖ ଅଛି । ବଉଦନିକଟସ୍ଥ ଗନ୍ଧରାଡ଼ିର ନୀଳମାଧବ ମନ୍ଦିର କଣ୍ଟିଲୋର, ନୀଳମାଧବ ମନ୍ଦିର, ନିଆଳି ନିକଟସ୍ଥ ମାଧବର ମାଧବ ମନ୍ଦିର ତଥା ବ୍ରହ୍ମଗିରିର ଅଲାଲନାଥ ମନ୍ଦିରର ମାଧବ ମୂର୍ତ୍ତିମାନ ଏହି ଧର୍ମଭାବନାର ହିଁ ନିଦର୍ଶନ ଅଟନ୍ତି । ଶୈଳୋଦ୍‌ଭବ, ଭୌମକର, ଭଞ୍ଜ, ସୋମ, ଗଙ୍ଗ ପ୍ରଭୃତି ବିଭିନ୍ନ ଉତ୍କଳୀୟ ରାଜବଂଶର ଦାୟାଦ ମାନେ କଦାଚିତ୍ ମାଧବୋ-ପାସକ ଥିବାର ଐତିହାସିକ ନିଦର୍ଶନମାନ ପ୍ରାପ୍ତ ହୁଏ । ଏପରିକି ପୁରୁଷୋତ୍ତମ କ୍ଷେତ୍ରରେ ମଧ୍ୟ ଅଦ୍ୟାବଧି ପବିତ୍ର ଶ୍ୱେତଗଙ୍ଗା ପୁଷ୍କରିଣୀତୀରରେ ଶ୍ୱେତମାଧବ ଓ ମତ୍ସ୍ୟ ମାଧବଙ୍କର ଉପାସନା ପ୍ରଚଳିତ ଅଛି । ଏହି ମାଧବଙ୍କର ବିଗ୍ରହ ସାଧାରଣତଃ ଏକକ ବିଷ୍ଣୁମୂର୍ତ୍ତି ହିଁ ଅଟେ । ତାହାଙ୍କର ରୂପ ପୂର୍ବରୁ ମତ୍ସ୍ୟପୁରାଣ

ବର୍ଣ୍ଣିତ କୃଷ୍ଣାବତାରୀ ବିଷ୍ଣୁ ସ୍ୱରୂପ ହିଁ ହୋଇପାରେ । କାରଣ ଉତ୍କଳରେ ପ୍ରାପ୍ତ ମାଧବ ବିଗ୍ରହମାନ ଉପର୍ଯ୍ୟୁକ୍ତ ସ୍ୱରୂପକୁ ହିଁ ମୁଖ୍ୟତଃ ପ୍ରକାଶ କରନ୍ତି ।

ପୁରୁଷୋତ୍ତମ କ୍ଷେତ୍ର ବା ପୁରୀରେ ବିଦ୍ୟମାନ ଥିବା ଅଦ୍ୟତନ ଶ୍ରୀମନ୍ଦିରର ଭୋଗମଣ୍ଡପର ଉତ୍ତର ଭାଗରେ ଏକ ବିଶିଷ୍ଟ ବିଗ୍ରହ ରହିଛି । ତହିଁରେ ଗୋଟିଏ ଖଟୁଲିରେ ଶ୍ରୀଜଗନ୍ନାଥଙ୍କ ବିଗ୍ରହ ତୁଲ୍ୟ ଏକ କ୍ଷୁଦ୍ର ବିଗ୍ରହ ସହିତ ଗୋଟିଏ ଶିବଲିଙ୍ଗ ଓ ଏକ ମହିଷମର୍ଦ୍ଦିନୀ ଦୁର୍ଗାଙ୍କର ବିଗ୍ରହକୁ ଏକତ୍ର ପୂଜିତ ହେଉଥିବାର ଦୃଶ୍ୟ ଅଙ୍କିତ ହୋଇଅଛି । ଏହିପରି ଏକ ଦୃଶ୍ୟ ସମ୍ବଳିତ ବିଗ୍ରହ କୋଣାର୍କର ସୂର୍ଯ୍ୟମନ୍ଦିର ଗାତ୍ରରେ ଦୁଇଟି ସ୍ଥାନରେ ଖୋଦିତ ହୋଇଥିବାର ଦୃଷ୍ଟ ହୁଏ । ଏହି ବିଗ୍ରହକୁ ଆଧାର କରି ଐତିହାସିକ ବିଦ୍ୱାନମାନଙ୍କ ମଧ୍ୟରେ ଅନେକ ପ୍ରକାର ବିଚାରଧାରା ପ୍ରବର୍ତ୍ତିତ ହୋଇଅଛି । ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମା ଚୋଡ଼ଗଙ୍ଗଦେବ, ପୁରୁଷୋତ୍ତମ କ୍ଷେତ୍ରରେ ଭଗବାନ ପୁରୁଷୋତ୍ତମଙ୍କ ପାଇଁ ଯେଉଁ ପ୍ରାସାଦ ନିର୍ମାଣ କରାଇଥିବାର ତାଙ୍କର ପୌତ୍ର ରାଜ ରାଜଦେବ ନିଜର ତାମ୍ର ଶାସନରେ ପ୍ରକାଶ କରନ୍ତି[21], ତହିଁରେ କେବଳ ପୁରୁଷୋତ୍ତମ ହିଁ ଅଧିଷ୍ଠିତ ହୋଇଥିବାର ସୂଚନା ମିଳେ । ସେହି କାଳରେ ତାଙ୍କ ସହିତ ବଳଦେବାଦି ଅନ୍ୟ ତ୍ରିବିଗ୍ରହଙ୍କର ଅବସ୍ଥିତି କଳ୍ପିତ ହୋଇ ନଥିବାର ଜଣାଯାଏ । କାରଣ ଚୋଡ଼ଗଙ୍ଗଦେବ ଶ୍ରୀପୁରୁଷୋତ୍ତମଙ୍କର ପ୍ରାସାଦ ନିର୍ମାଣ କରିବାରେ ଲକ୍ଷ୍ମୀଦେବୀ ଚିର ପିତୃଗୃହବାସ ପରିତ୍ୟାଗ କରି ଓ ଗର୍ଭଗୃହରେ ବାସ କରିବାର ସୁଯୋଗ ଲାଭକରି 'ପ୍ରମୋଦାନ୍ୱିତା' ହୋଇଥିବାର ତହିଁରେ ଉଲ୍ଲେଖ ରହିଛି । ଏବେ ମଧ୍ୟ ଗରୁଡ଼ସ୍ତମ୍ଭ ଠାରୁ ରତ୍ନବେଦୀ ଦିଗକୁ ଦୃଷ୍ଟି ନିକ୍ଷେପ କଲେ ତହିଁରେ କେବଳ ଏକ ବିଗ୍ରହ ସ୍ପଷ୍ଟରୂପରେ ଦୃଶ୍ୟମାନ ହୁଅନ୍ତି । ଅତଏବ ମନ୍ଦିର ନିର୍ମାଣ କରିବା କାଳରେ ତହିଁରେ କେବଳ ଏକମାତ୍ର ବିଗ୍ରହ ପ୍ରତିଷ୍ଠା କରିବା ଲକ୍ଷ୍ୟରେ ଗର୍ଭଗୃହର କଳ୍ପନା କରାଯାଇଥିବା ଅନୁମାନଟି ଅସଂଗତ ହେବନାହିଁ । ପରବର୍ତ୍ତୀ କାଳରେ ଓଡ଼ିଶାରେ ଗଙ୍ଗବଂଶୀୟ ରାଜା ପ୍ରଥମ ନରସିଂହ ଦେବ (କୋଣାର୍କର ସୂର୍ଯ୍ୟମନ୍ଦିର ନିର୍ମାତା)ଙ୍କ ରାଜତ୍ୱ ବେଳକୁ ପଞ୍ଚଦେବୋପାସନା । ନହେଲେ ମଧ୍ୟ ତ୍ରିଦେବୋପାସନାର ପ୍ରଚଳନ ଆରମ୍ଭ ହୋଇଥିବ ଓ ତାହାହିଁ ସୂର୍ଯ୍ୟମନ୍ଦିର ତଥା ଭୋଗମଣ୍ଡପର ଉଲ୍ଲିଖିତ ବିଗ୍ରହ ଗାତ୍ରରେ ପ୍ରତିଫଳିତ ହୋଇଥିବ ।

ଏହା ଉତ୍ତାରୁ ଭଗବାନ ଶ୍ରୀବିଷ୍ଣୁଙ୍କର ମାଧବ ସ୍ୱରୂପର ବିବର୍ତ୍ତନ ଘଟି ତାହା ଅଦ୍ୟତନ ଶ୍ରୀଜଗନ୍ନାଥଙ୍କର ହସ୍ତପଦାଦିଶୂନ୍ୟ ବିଗ୍ରହରେ କିପରି ପରିଣତ

ହେଲା, ତାହାର ସନ୍ତୋଷଜନକ ସମାଧାନ ହୋଇ ପାରିନାହିଁ । ତେବେ ମହାରାଜ ଚୋଡ଼ଗଙ୍ଗ ଦେବଙ୍କର ରାଜତ୍ୱ ବେଳକୁ ଭାରତର ବିଭିନ୍ନ ସ୍ଥାନରେ ବ୍ୟାପକ ଧର୍ମୀୟ ସଂଘର୍ଷର ସୂତ୍ରପାତ ହୋଇଥିବାର ପ୍ରମାଣ ମିଳେ । ଦକ୍ଷିଣ-ଭାରତରେ ବୈଷ୍ଣବଧର୍ମ ଓ ଦର୍ଶନର ବ୍ୟାପକ ପ୍ରଚାର ଓ ପ୍ରସାର ସଂଘଟିତ ହୋଇଥିଲା ଓ ଭଗବାନ ଶ୍ରୀବିଷ୍ଣୁଙ୍କୁ ପରମ ଉପାସ୍ୟ ରୂପରେ ଗ୍ରହଣ କରି ଅନେକ ଧର୍ମ ସଂପ୍ରଦାୟର ଉଦ୍‌ଭବ ହୋଇଥିଲା । ବିଶିଷ୍ଟ ଦ୍ୱୈତବାଦୀ ଶ୍ରୀବୈଷ୍ଣବ ସଂପ୍ରଦାୟର ପ୍ରବର୍ତ୍ତକ ଶ୍ରୀରାମାନୁଜାଚାର୍ଯ୍ୟ ଏହି ସବୁ ସଂପ୍ରଦାୟ ପ୍ରବର୍ତ୍ତକମାନଙ୍କ ମଧ୍ୟରେ ଅଗ୍ରଗଣ୍ୟ ଅଟନ୍ତି । ସେ ପୁରୁଷୋତ୍ତମ-ନାମଧାରୀ ଶ୍ରୀବିଷ୍ଣୁଙ୍କୁ ହିଁ ବେଦାନ୍ତ ପ୍ରତିପାଦିତ ବ୍ରହ୍ମରୂପରେ ସ୍ୱୀକାର କରିଥିଲେ । ତାଙ୍କରି ପ୍ରଭାବରେ ହିଁ ନୀଳାଚଳ କ୍ଷେତ୍ରର ଶ୍ରୀପୁରୁଷୋତ୍ତମ ପରଂବ୍ରହ୍ମ ରୂପରେ ପ୍ରତିପାଦିତ ହେବା ସଙ୍ଗେ ସଙ୍ଗେ ଦାରୁବ୍ରହ୍ମ ନାମରେ ମଧ୍ୟ ଖ୍ୟାତ ହୋଇଥିଲେ । ତେଣୁ ମୁଣ୍ଡକ, ଶ୍ୱେତାଶ୍ୱତର ପ୍ରଭୃତି ଉପନିଷଦ୍‌ରେ ପରଂବ୍ରହ୍ମଙ୍କର ଯେଉଁ ନିର୍ଗୁଣ ସ୍ୱରୂପର କଳ୍ପନା ତାତ୍ତ୍ୱିକ ଦୃଷ୍ଟିରେ କରାଯାଇଥିଲା, ତାହାକୁ ହିଁ ସାକାର କରିବା ପାଇଁ ତଦନୁସାରେ ପାଣି, ପାଦ ନଥିବା, ଚକ୍ଷୁ ଓ କର୍ଣ୍ଣନଥିବା ପରମ ପୁରୁଷଙ୍କର ରୂପ କଳ୍ପିତ ହୋଇଥିବାର ବିଶ୍ୱାସ କରାଯାଇପାରେ[୨୨] । ପୁଣି କେତେକ ବିଦ୍ୱାନ୍ ଶ୍ରୀବିଷ୍ଣୁଙ୍କର ଏହି ସ୍ୱରୂପକୁ ଧ୍ୟାନରତ ବୁଦ୍ଧଙ୍କର ରୂପବୋଲି ମଧ୍ୟ ପ୍ରକାଶ କରିଥାନ୍ତି । ଅବଶ୍ୟ ସେମାନଙ୍କର ଯୁକ୍ତିକୁ ସିଦ୍ଧ କରିବା କଠିନ ଅଟେ । ତେବେ ଏକକ ମୂର୍ତ୍ତି ଜଗନ୍ନାଥଙ୍କୁ ଦଧିବାମନ ରୂପରେ ଉପାସନା କରିବାର ପ୍ରଥା ଏ ଯାବତ୍ ଉତ୍କଳରେ ଅନେକ ସ୍ଥଳରେ ପ୍ରଚଳିତ ଅଛି ।

ଭାରତର ଧର୍ମ ବ୍ୟବସ୍ଥାରେ ବିଗ୍ରହ-ଉପାସନା ପ୍ରଥମେ ବୌଦ୍ଧାଚାର୍ଯ୍ୟମାନଙ୍କ ଦ୍ୱାରା ଉଦ୍‌ଭାବିତ ହୋଇ ତାହା କ୍ରମଶଃ ଆର୍ଯ୍ୟଧର୍ମକୁ ସଂକ୍ରମିତ ହୋଇଥିବାର ଐତିହାସିକ ବିଦ୍ୱାନମାନେ ବିଶ୍ୱାସ କରନ୍ତି । ସେଥିପାଇଁ ମନୁସ୍ମୃତିରେ ଦେବ ପୂଜକ ବ୍ରାହ୍ମଣମାନଙ୍କୁ ହୀନ ଦୃଷ୍ଟିରେ ଦେଖା ଯାଇଛି[୨୩] ଓ ସେମାନେ ଦେବ ପିତୃକାର୍ଯ୍ୟ କରିବା ପାଇଁ ବର୍ଜ୍ୟବୋଲି ଘୋଷଣା କରାଯାଇଛି । ବୈଦିକ ଧର୍ମାବଲମ୍ବୀ ଶ୍ରୋତ୍ରୀୟ ବ୍ରାହ୍ମଣମାନେ କେବଳ ହୋମ, ଯଜ୍ଞାଦି ଅନୁଷ୍ଠାନ କରିବା ବିଧେୟ, ମନ୍ଦିରରେ ଦେବପୂଜା କଲେ ସେମାନେ ଶ୍ରୋତ୍ରୀୟତ୍ୱ ହରାଉଥିବାର ପ୍ରାଚୀନ ଧର୍ମଶାସ୍ତ୍ରକାରଗଣ ନିର୍ଣ୍ଣୟ କରିଥିଲେ । କିନ୍ତୁ ବୌଦ୍ଧଧର୍ମରେ ମୂର୍ତ୍ତିପୂଜକ ମହାଯାନ ସଂପ୍ରଦାୟର ଲୋକ ପ୍ରିୟତା ଦେଖି ଭାରତର ଶ୍ରୌତ-ସ୍ମାର୍ତ୍ତ ଧର୍ମାବଲମ୍ବୀମାନେ ମଧ୍ୟ ମୂର୍ତ୍ତି ପୂଜାକୁ ଗ୍ରହଣ କରିନେବା

ସଙ୍ଗେ ସଙ୍ଗେ ବୌଦ୍ଧଧର୍ମକୁ ଲୋପ କରିବାର ଅଭିପ୍ରାୟରେ ଅନେକ ବୌଦ୍ଧ ଦେବତାଙ୍କୁ ନିଜ ଧର୍ମରେ ଭିନ୍ନ ରୂପରେ ସ୍ୱୀକାର କରିଥିବାର ବିଶ୍ୱାସ କରାଯାଏ । ସେହି କାରଣରୁ ସ୍ୱୟଂ ବୁଦ୍ଧଦେବ, ବିଷ୍ଣୁଙ୍କର ଅନ୍ୟତମ ଅବତାର ରୂପରେ ସ୍ୱୀକୃତ ହେଲେ ଓ ନୀଳାଚଳ କ୍ଷେତ୍ରର ପୁରୁଷୋତ୍ତମ ଶ୍ରୀଭଗବାନଙ୍କର ବୌଦ୍ଧାବତାର ରୂପରେ କଳ୍ପିତ ହେଲେ । 'ଜ୍ଞାନସିଦ୍ଧି'ର ପ୍ରଣେତା ଇନ୍ଦ୍ରଭୂତି ତାଙ୍କର ଉପାସ୍ୟଦେବ ବୁଦ୍ଧଙ୍କୁ 'ସର୍ବଜନବରର୍ଜିତ ଜଗନ୍ନାଥ' ବୋଲି ତାଙ୍କର ମଙ୍ଗଳାଚରଣ ଶ୍ଳୋକରେ ଘୋଷଣା କରିଥିବାରୁ ପୁରୁଷୋତ୍ତମ ମଧ୍ୟ ଜଗନ୍ନାଥ ନାମ ଧାରଣକଲେ । ଏ ସଂପର୍କରେ ବୌଦ୍ଧ ଧର୍ମଗ୍ରନ୍ଥ ବରାହ ସଂହିତାରେ ଶ୍ରୀଜଗନ୍ନାଥଙ୍କର ଯେଉଁ ବର୍ଣ୍ଣନା ମିଳେ, ତାହା ବାହ୍ମଣ୍ୟ-ଧର୍ମର କୃଷ୍ଣ-ବାସୁଦେବଙ୍କର ଧ୍ୟାନକୁ ହିଁ ସ୍ମରଣ କରାଇ ଦେଉଥିବାର ଡ଼କ୍ଟର ସତ୍ୟନାରାୟଣ ରାଜଗୁରୁ ପ୍ରକାଶ କରନ୍ତି[୨୫] । ଏହା ବ୍ୟତୀତ ଓଡ଼ିଶାର ଆଦିକବି ସାରଳା ଦାସଙ୍କ ଠାରୁ ଆରମ୍ଭ କରି ପଞ୍ଚସଖା ଯୁଗର ତଥା ଉତ୍ତର କାଳର ଅନେକ କବି ଶ୍ରୀ ନୀଳାଚଳ କ୍ଷେତ୍ରର ପୁରୁଷୋତ୍ତମଙ୍କୁ ବୌଦ୍ଧ ରୂପ ବା ବୌଦ୍ଧରୂପ ବୋଲି ନିଜ ନିଜ ଗ୍ରନ୍ଥରେ ଘୋଷଣା କରିଛନ୍ତି । ସେହି ବୌଦ୍ଧରୂପୀ ଜଗନ୍ନାଥ ଯେ ମୌଳିକ ରୂପରେ ବଳଭଦ୍ର-ସୁଭଦ୍ରା-ସୁଦର୍ଶନଙ୍କ ସହିତ ଅନ୍ୱିତ ନଥିଲେ, ଅପରନ୍ତୁ ଏକକ ଦେବତା ହିଁ ଥିଲେ, ଏଥିରେ ସନ୍ଦେହର ଅବକାଶ ନାହିଁ । ପରବର୍ତ୍ତୀ କାଳରେ ହିଁ ସେ ଚତୁର୍ଦ୍ଧାମୂର୍ତ୍ତି ଧାରଣ କରିଛନ୍ତି ।

ଖ୍ରୀଷ୍ଟୀୟ ଅଷ୍ଟମ-ନବମ ଶତାବ୍ଦୀଠାରୁ ଆରମ୍ଭକରି ପ୍ରାୟ ଚତୁର୍ଦ୍ଦଶ-ପଞ୍ଚଦଶ ଶତାବ୍ଦୀ ପର୍ଯ୍ୟନ୍ତ ଭାରତରେ ଈଶ୍ୱରୀୟ ଭାବନାର ଏକ ମହାନ ବିପ୍ଳବ ସଂଘଟିତ ହୋଇଥିବାର ବିଦ୍ୱାନମାନେ ପ୍ରକାଶ କରନ୍ତି । ଓଡ଼ିଶାରେ ମଧ୍ୟ ଭୌମବଂଶ, ସୋମବଂଶ ଓ ଗଙ୍ଗବଂଶର ରାଜତ୍ୱକାଳରେ ଏହାର ଅନେକ ପରୀକ୍ଷା ନିରୀକ୍ଷା ହୋଇଥିଲା । ପ୍ରଖ୍ୟାତ ଆଚାର୍ଯ୍ୟ ଶଙ୍କର ଏହି ବିପ୍ଳବର ସୂତ୍ରପାତ କରିଥିଲେ । ସେ ପ୍ରାଚୀନ ଉପନିଷଦ-ସାହିତ୍ୟ, ସ୍ମୃତି-ସାହିତ୍ୟ ତଥା ପୁରାଣ-ସାହିତ୍ୟରେ ପ୍ରତିପାଦିତ ଈଶ୍ୱରୀୟ ଭାବନାର ଏକ ବିଚିତ୍ର ସମନ୍ୱୟ ଘଟାଇଥିଲେ । ଏହି କାଳମଧ୍ୟରେ ହିଁ ଅନେକ ନୂତନ ପୁରାଣ ଓ ଧର୍ମଶାସ୍ତ୍ର ରଚିତ ହୋଇଥିଲା ଓ କେତେକ ପୁରାତନ ପୁରାଣର ଘଟ-ପରିବର୍ତ୍ତନ ଘଟିଥିଲା । ଗଙ୍ଗବଂଶୀୟ ସମ୍ରାଟ ତୃତୀୟ ଅନଙ୍ଗଭୀମ ଦେବଙ୍କ ରାଜତ୍ୱ କାଳରେ ସେ ଏହିପରି ପ୍ରଚେଷ୍ଟା କରିଥିବାର ତାଙ୍କର ରାଜେଶ୍ୱର ମନ୍ଦିର ଶିଳାଲିପିରୁ ଜ୍ଞାତହୁଏ । ତହିଁରେ ସେ ତାଙ୍କର ବ୍ରାହ୍ମଣ ମନ୍ତ୍ରୀ ବିଷ୍ଣୁ ଆଚାର୍ଯ୍ୟଙ୍କ ସହାୟତାରେ ଅନେକ ନବୀନ ପୁରାଣ

ରଚନା କରାଇ ଥିବାର ପ୍ରକାଶ କରିଛନ୍ତି[25] । ଏହି ଅବସ୍ଥାରେ ନିଶ୍ଚୟ ଓଡ଼ିଶାର କେତେକ ତୀର୍ଥର ବିବରଣୀ ତଥା ମାହାତ୍ମ୍ୟ ବିଭିନ୍ନ ପୁରାଣରେ ସନ୍ନିବେଶିତ ହୋଇଥାଇପାରେ । ଭାରତରେ ବୌଦ୍ଧଧର୍ମର ପ୍ରଭାବ ଓ ପ୍ରସାରକୁ ଖର୍ବୀକରିବା ଅଭିପ୍ରାୟରେ ଏହି କାଳରେ ହିଁ ଶୈବ, ଶାକ୍ତ, ଗାଣପତ୍ୟ ଓ ସର୍ବୋପରି ବୈଷ୍ଣବଧର୍ମର ନବୀନ ସଂସ୍କାର କରଯାଇ ଦେବତାଙ୍କ ମହିମା, ଦେବମନ୍ଦିର ନିର୍ମାଣ ଓ ପ୍ରତିଷ୍ଠା, ଅବତାରବାଦ ଦେବପୂଜା-ପଦ୍ଧତି, ତୀର୍ଥ ବିବରଣୀ, ନିତ୍ୟାଚାର ପ୍ରଭୃତି ବିଷୟମାନ ପୁରାଣମାନଙ୍କରେ ସଂଯୋଜନ କରଯାଉଥିଲା । ସେହି କାଳରେ ହିଁ ଶ୍ରୀନୀଳାଚଳ ଧାମରେ ଆରାଧିତ ଶ୍ରୀଜଗନ୍ନାଥ ଦେବଙ୍କର ସ୍ୱରୂପ ସଂବଳିତ ମାହାତ୍ମ୍ୟ ଓ ବିବରଣୀମାନ ବ୍ରହ୍ମ, ନାରଦ, ସ୍କନ୍ଦ ପ୍ରଭୃତି ବିଭିନ୍ନ ପୁରାଣରେ ସଂଯୋଗ କରଯାଇଥିବାର ସ୍ୱୀକାର କରଯାଇପାରେ ।

ପାରଂପରିକ ବା ପ୍ରସିଦ୍ଧ ଅଷ୍ଟାଦଶ ପୁରାଣମାନଙ୍କର ନବୀକରଣ ତଥା ସଂଯୋଜନ ଉତ୍ତାରୁ ଅନେକ ବ୍ରାହ୍ମଣ୍ୟ ତନ୍ତ୍ର ଗ୍ରନ୍ଥ ମଧ୍ୟ ରଚିତ ହୋଇ ବୌଦ୍ଧ-ତନ୍ତ୍ରର ଲୋପ କରିବା ଦିଗରେ ଯୋଜନାବଦ୍ଧ ପଦକ୍ଷେପ ନିଆଯାଇଥିବାର ବିଶ୍ୱାସ କରଯାଏ । ସେହି କାରଣରୁ ନୂତନ ଈଶ୍ୱରୀୟ ତଥା ଦାର୍ଶନିକ ଭାବନାର ଅନୁକୂଳ ହେବା ଭଳି ଅନେକ ସ୍ମୃତି, ଧର୍ମଶାସ୍ତ୍ର, ନିତ୍ୟାଚାର, କର୍ମକାଣ୍ଡ ବା ପୂଜାପଦ୍ଧତି, ସ୍ଥଳ ମାହାତ୍ମ୍ୟ ପ୍ରଭୃତି ଗ୍ରନ୍ଥ ମଧ୍ୟ ରଚିତ ହୋଇ ଉପର୍ଯ୍ୟୁକ୍ତ ବିପ୍ଳବ-ଯଜ୍ଞର ପୂର୍ଣ୍ଣାହୁତି ଦିଆଯାଇଥିଲା । ଓଡ଼ିଶାରେ ସୋମବଂଶ ଓ ଗଙ୍ଗବଂଶ ରାଜତ୍ୱ ବେଳକୁ ଏହିପରି ଅନେକ ଧର୍ମଗ୍ରନ୍ଥ ସଂସ୍କୃତ ଭାଷାରେ ରଚିତ ହୋଇଥିବାର ପ୍ରମାଣମାନ ପ୍ରାପ୍ତହୁଏ । ଆଲୋଚ୍ୟ ନୀଳାଦ୍ରି ମହୋଦୟ, କପିଳ ସଂହିତା ସହିତ ଶତାନନ୍ଦଙ୍କ ଭାସ୍ୱତୀ ଓ ଶତାନନ୍ଦ-ସଂଗ୍ରହ, ଶମ୍ଭୂକରଙ୍କ ନିତ୍ୟାଚାର ପଦ୍ଧତି, ନରସିଂହ ବାଜପେୟୀଙ୍କର ନିତ୍ୟାଚାର ପ୍ରଦୀପ ଓ ଅନ୍ୟ ଅନେକ ଜ୍ଞାତ ଓ ଅଜ୍ଞାତ ନାମା ବିଦ୍ୱାନଙ୍କର ଗ୍ରନ୍ଥମାନ ଏହି କାଳରେ ହିଁ ରଚିତ ହୋଇଥିଲା । ପ୍ରଥିତଯଶା କବି ଜୟଦେବ ଏହି କାଳରେ ହିଁ ତାଙ୍କର ଗୀତଗୋବିନ୍ଦ ରଚନା କରିଥିଲେ । କ୍ରମଶଃ ଏହି ସବୁ ଗ୍ରନ୍ଥର ଅନୁସରଣରେ ଆହୁରି ଅନେକ ଗ୍ରନ୍ଥ ଉତ୍ତର କାଳୀନ ବିଦ୍ୱାନମାନେ ରଚନା କରିଥିବାର ତଦ୍ୱିତ୍ ବିଦ୍ୱାନମାନେ ପ୍ରକାଶ କରିଅଛନ୍ତି ।

ଶ୍ରୀଜଗନ୍ନାଥଙ୍କର ଚତୁର୍ଦ୍ଧା ବିଭାଗର ବିବରଣୀ ସାରଳା ଦାସ ମଧ୍ୟ ସ୍ୱକୀୟ ମହାଭାରତରେ ପ୍ରଦାନ କରିଛନ୍ତି । ତହିଁରେ ପାଣ୍ଡବମାନଙ୍କ ବନବାସ

ପ୍ରସଙ୍ଗରେ ସେମାନେ ନୀଳଗିରିଠାରେ ଉପସ୍ଥିତ ହେବାରେ ମାର୍କଣ୍ଡ ଋଷି ଯୁଧିଷ୍ଠିରଙ୍କୁ ନୀଳଗିରି-ବୃତ୍ତାନ୍ତ କହି, ସେହି ଅବସରରେ ଇନ୍ଦ୍ରଦ୍ୟୁମ୍ନ ମହାରାଜାଙ୍କର ଚତୁର୍ଦ୍ଧା ମୂର୍ତ୍ତି ନିର୍ମାଣ ବୃତ୍ତାନ୍ତ ମଧ୍ୟ ବର୍ଣ୍ଣନା କରିଥିଲେ । ତଦନୁସାରେ ସ୍ୱୟଂ ବିଶ୍ୱକର୍ମା ଦାରୁ ମୂର୍ତ୍ତି ନିର୍ମାଣ କରିବା ନିମନ୍ତେ ଉପସ୍ଥିତ ହୋଇଥିଲେ ଓ ସେ ଅର୍ଦ୍ଧଦିବସ ତଥା ସଂପୂର୍ଣ୍ଣ ରାତ୍ରି ପର୍ଯ୍ୟନ୍ତ ଗୁପ୍ତରେ ମୂର୍ତ୍ତି ନିର୍ମାଣ କରିଥିଲେ । ମନ୍ଦିର ମଧ୍ୟରେ କୌଣସି ଶବ୍ଦ ଶୁଣି ନପାରି ରାଜା ଦ୍ୱାର ଉଦ୍‌ଘାଟନ କରିବାରେ ତିନି ମୂର୍ତ୍ତି ପ୍ରତ୍ୟକ୍ଷ ହୋଇଥିଲେ । ସେମାନେ କୃଷ୍ଣ ଶୁକ୍ଳ ଓ ହରିତ ବର୍ଣ୍ଣ ହୋଇଥିଲେ । ସେମାନଙ୍କର ହସ୍ତ, ପାଦ, ଅଙ୍ଗୁଠି, ନାକ୍, କାନ୍, ଆଖି କପାଳ, ପ୍ରଭୃତି ଅଙ୍ଗ ନଥିଲା । ରାଜା ଶବର ମଧ୍ୟ ଆଉ ଗୋଟିଏ ଦିନ ଅପେକ୍ଷା କରିଥିଲେ, ଜଗନ୍ନାଥଙ୍କ ପଦ୍ମପାଦ ଦର୍ଶନ ହୋଇପାରିଥାନ୍ତା ବୋଲି ପ୍ରକାଶ କରିଥିଲା[26] ।

ଏହାପରେ ନୀଳାମ୍ବର ଦାସଙ୍କ ଦେଉଳ ତୋଳାରେ ବୃଦ୍ଧ ବର୍ଦ୍ଧକି ବେଶୀ ବିଶ୍ୱକର୍ମା ପ୍ରତିମା ନିର୍ମାଣ କରିବାକୁ ଏକୋଇଶ ଦିନ କଷ୍ଟ କରିଥିବା ସ୍ଥଳେ ମହାରାଣୀ ଗୁଣ୍ଡିଚା ଦେବୀଙ୍କ ଦୁରାଗ୍ରହରେ ରାଜା ଇନ୍ଦ୍ରଦ୍ୟୁମ୍ନ ପନ୍ଦର ଦିନ ପରେ ହିଁ ଦ୍ୱାର ଉନ୍ମୋଚନ କରି ଅର୍ଦ୍ଧ ନିର୍ମିତ ବିଗ୍ରହକୁ ଦର୍ଶନ କରିବା ବିବରଣୀ ପ୍ରଦତ୍ତ ହୋଇଅଛି । ତେବେ ପଞ୍ଚସଖା ଯୁଗ ବେଳକୁ ଶ୍ରୀଜଗନ୍ନାଥ ଯେପରି ଚତୁର୍ଦ୍ଧା ମୂର୍ତ୍ତି ରୂପରେ ପ୍ରତିଷ୍ଠିତ ହୋଇଥିଲେ, ତାଙ୍କର ସ୍ୱରୂପକୁ ତତ୍‌ଯୁଗୀୟ ଦାର୍ଶନିକ କବିମାନେ ଚକ୍ଷୁର ଚାରିଭାଗ, ଶରୀରର ଚାରିଅଙ୍ଗ, ଚାରିବେଦ, ପ୍ରଣବର ଚାରିଅଂଶ, ଚାରିବୀଜ, ମହାମନ୍ତ୍ରର ଚାରିଅଂଶ ପ୍ରଭୃତି ରୂପରେ ତାତ୍ତ୍ୱିକ ବ୍ୟାଖ୍ୟା କରିଥିବାର ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ପ୍ରକାଶ କରିଛନ୍ତି[27] । ଅତଏବ ଓଡିଶାରେ ସୂର୍ଯ୍ୟବଂଶ-ରାଜତ୍ୱର ଶେଷଭାଗକୁ ଶ୍ରୀଜଗନ୍ନାଥଙ୍କର ଅଦ୍ୟତନୀ ଚତୁର୍ଦ୍ଧା ମୂର୍ତ୍ତି ଜନମାନସରେ ପ୍ରତିଷ୍ଠିତ ହୋଇସାରିଥିବାର ବିଶ୍ୱାସ କରାଯାଇପାରେ ।

ଏହିପରି ଭାବରେ ଶ୍ରୀପୁରୁଷୋତ୍ତମ ଜଗନ୍ନାଥଙ୍କର ବିଗ୍ରହ-ତତ୍ତ୍ୱଟି ବହୁ ପୂର୍ବକାଳରୁ ସ୍ୱତନ୍ତ୍ର ଭାବରେ ବିବର୍ତ୍ତନର ମଧ୍ୟ ଦେଇ ଆସିଥିବା ଦୁଇଗୋଟି ପୃଥକ ଐଶ୍ୱରୀୟ ଭାବନାର ଅଭିନବ ସଂମିଶ୍ରଣ ଅଟେ । ପ୍ରଥମଟି ଶ୍ରୀନାରାୟଣ-ବିଷ୍ଣୁ-ବୁଦ୍ଧ-ମାଧବ-ଦଧି ବାମନ-ଭାବନା ସହିତ କ୍ରମଶଃ ଶିବ ଓ ପାର୍ବତୀଙ୍କ ସଂଯୋଗରେ ତ୍ରିବିଧ ଭାବନାରେ ପରିଣତ ହୋଇ ପ୍ରଥମେ ତ୍ରିମୂର୍ତ୍ତି ଓ ପରେ

ଚତୁର୍ଦ୍ଧା ମୂର୍ତ୍ତିରେ ପର୍ଯ୍ୟବେସିତ ହେବା ଏବଂ ଦ୍ୱିତୀୟଟି ଶ୍ରୀବିଷ୍ଣୁ-କୃଷ୍ଣଭାବନା ସହିତ ବଳଦେବ ବା ଅନନ୍ତ ଓ ସୁଭଦ୍ରା ବା ଏକାନଂଶାଙ୍କ ସଂଯୋଗରେ କ୍ରମଶଃ ତ୍ରିମୂର୍ତ୍ତି ଓ ଚତୁର୍ମୂର୍ତ୍ତିରେ କଳ୍ପିତ ହେବା । ପ୍ରଥମ ଭାବନାରେ ବୈଦିକ ଧର୍ମ ପ୍ରତୀକରୂପୀ ଯୂପଙ୍କୁ ଓ ଦ୍ୱିତୀୟ ଭାବନାରେ ବୈଷ୍ଣବଧର୍ମର ପ୍ରତୀକ ରୂପୀ ସୁଦର୍ଶନ-ଚକ୍ରକୁ ଉପାସ୍ୟ ଦେବତା ରୂପରେ ସ୍ଥାନ ଦେବା ଉଦ୍ଦେଶ୍ୟରେ ହିଁ ସୁଦର୍ଶନଙ୍କୁ ଚତୁର୍ଥ ଦେବରୂପରେ କଳ୍ପନା କରାଯାଇଥିବା ଅନୁମେୟ । ଏହି ପ୍ରକ୍ରିୟା ନିଶ୍ଚୟ ଓଡ଼ିଶାରେ ସୂର୍ଯ୍ୟ ବଂଶର ରାଜତ୍ୱ ସମୟକୁ ସମାପ୍ତ ହୋଇ ଯାଇଥିଲା । ମହାରାଜ ପ୍ରତାପରୁଦ୍ରଙ୍କ ସମୟକୁ ଶ୍ରୀପୁରୁଷୋତ୍ତମଙ୍କ ବିଗ୍ରହ ତତ୍ତ୍ୱରେ କୌଣସି ପରିବର୍ତ୍ତନ ନହୋଇ କେବଳ ପୂଜା ପଦ୍ଧତିରେ ଗୌଡ଼ୀୟ ବୈଷ୍ଣବ ଧର୍ମର ପ୍ରଭାବ କ୍ରମେ କେତେକ ନୂତନ ବ୍ୟବସ୍ଥାର ପ୍ରଚଳନ ମାତ୍ର ହୋଇଥିବାର ପ୍ରମାଣ ମିଳେ । ତେବେ ଏ ସଂପର୍କରେ ବ୍ୟାପକ ଅନୁସନ୍ଧାନ ତଥା ଅଧିକ ପର୍ଯ୍ୟାଲୋଚନର ଅପେକ୍ଷା କରାଯାଇ ପାରେ । ହେଲେ, ଆଜିର ଚତୁର୍ଦ୍ଧା ମୂର୍ତ୍ତି ବିଗ୍ରହ ଯେ ଉତ୍କଳରେ ବହୁଯୁଗରୁ ପ୍ରଚଳିତ ଈଶ୍ୱର-ଭାବନାର ଯେ କ୍ରମ ବିବର୍ତ୍ତନର ପରିଣତି , ଏଥିରେ ସନ୍ଦେହ ନାହିଁ । ଅଧୁନା ଆମ୍ଭେ ସେହି ଚତୁର୍ଦ୍ଧା ମୂର୍ତ୍ତି ବିଗ୍ରହଙ୍କୁ ହିଁ ଦର୍ଶନ କରୁଛୁ ।

ବାଳଭଦ୍ର ଗଳି (କୁଣ୍ଢେଇବେଣ୍ଟ ସାହି).
ପୋ: ଜି:-ପୁରୀ ।

## ଟିପ୍ପଣୀ :—

୧ । ଏତେ ଚାଂଶକଳାଃ ପୁଂସଃ କୃଷ୍ଣସ୍ତୁ ଭଗବାନ୍ ସ୍ୱୟମ । (ଭାଗବତ ୧.୩.୨୮)

୨ । ନୃସିଂହ-ମନ୍ତ୍ରରାଜେନ ଜଗନ୍ନାଥଂ ଯଥା ନୃପ । ନ ପୂଜୟେ ଦଶକଞ୍ଚ ତଦା ଗୋପାଳମନ୍ତ୍ରତଃ । (ନୀଳାଦ୍ରି ମହୋଦୟ-ସୂତସଂହିତା ୬-୧୬)

୩ । ଯଦା ଯଦା ହି ଧର୍ମସ୍ୟ ଗ୍ଲାନିର୍ଭବତି ଭାରତ । ଅଭ୍ୟୁତ୍ଥାନମ ଧର୍ମସ୍ୟ ତଦାତ୍ମାନଂ ସୃଜାମ୍ୟହମ୍ ।। ପରିତ୍ରାଣାୟ ସାଧୂନାଂ ବିନାଶାୟ ଚ ଦୁଷ୍କୃତାମ୍ । ଧର୍ମସଂସ୍ଥାପନାର୍ଥାୟ ସଂଭବାମି ଯୁଗେ ଯୁଗେ ।। (ଗୀତା ୪.୭.୮)

୪ । ବିଷ୍ଣୋସ୍ତାବତ୍ ପ୍ରବକ୍ଷ୍ୟାମି ଯାଦୃଗ୍ରୂପଂ ପ୍ରଶସ୍ୟତେ । ଶଙ୍ଖ ଚକ୍ର ଧରଂ ଶାନ୍ତଂ ପଦ୍ମହସ୍ତଂ ଗଦାଧରମ୍ ।। ଛତ୍ରାକାରଂ ଶିରସ୍ତସ୍ୟ କମ୍ବୁଗ୍ରୀବଂ ଶୁଭେକ୍ଷଣମ୍ । ତୁଙ୍ଗନାସଂ ଶୁକ୍ତିକର୍ଣ୍ଣଂ ପ୍ରଶାନ୍ତୋରୁଭୁଜକ୍ରମମ୍ ।। କ୍ୱଚି ଦଷ୍ଟଭୁଜଂ ବିଦ୍ୟାଚ୍ଚତୁର୍ଭୁଜମଥାପରମ୍ ।

(ମତ୍ସ୍ୟ ୨୫୮.୪.୬)

୫ । ମତ୍ସ୍ୟ ପୁରାଣ (୨୫୮.୯.୧୫)

୬ । ଅଗ୍ନି ପୁରାଣ (୪୫.୪୬.୪୯)

୭ । ବ୍ରହ୍ମପୁରାଣ ୫୦ ଅଧ୍ୟାୟ । ନିମ୍ନ ଉଦ୍ଧୃତି ମଧ୍ୟ ଦ୍ରଷ୍ଟବ୍ୟ :—

ଶ୍ରୁତ୍ୱୈତଦ୍ୱଚନଂ ତସ୍ୟ ବିଶ୍ୱକର୍ମା ସୁକର୍ମକୃତ୍ । ତତ୍କ୍ଷଣାତ୍ କାରୟାମାସ ପ୍ରତିମାଃ ଶୁଭଲକ୍ଷଣାଃ (୪୮)

ପ୍ରଥମଂ ଶୁକ୍ଳ ବର୍ଣ୍ଣାଭଂ ଶାରଦେନ୍ଦୁ ସମପ୍ରଭମ୍ । ଆରକ୍ତାକ୍ଷଂ ମହାକାୟଂ ସ୍ଫଟା ବିକଟ ମସ୍ତକମ୍ (୪୯)

ନୀଳାମ୍ବରଧରଂ ଗ୍ରୈଗ୍ରଂ ବଦ୍ଧ ବଳମଦୋଦ୍ଧତମ୍ । କୁଣ୍ଡଳୈକଧରଂ ଦିବ୍ୟଂ ଗଦାମୂଷଳଧାରଣମ୍ (୫୦)

ଦ୍ୱିତୀୟଂ ପୁଣ୍ଡରୀକାକ୍ଷଂ ନୀଳଜୀମୂତ ସଂନିଭମ୍ । ଅତସୀ ପୁଷ୍ପସଂକାଶଂ ପଦ୍ମପତ୍ରାୟତେକ୍ଷଣମ୍ (୫୧)

ପୀତବାସସମତ୍ୟୁଗ୍ରଂ ଶୁଭଂ ଶ୍ରୀବତ୍ସଲକ୍ଷଣମ୍ । ଚକ୍ରପୂର୍ଣ୍ଣବରଂଦିବ୍ୟଂ ସର୍ବପାପହରଂ ହରିମ୍ (୫୨)

ତୃତୀୟାଂ ସ୍ୱର୍ଣ୍ଣବର୍ଣ୍ଣଞ୍ଚ ପଦ୍ମପତ୍ରାୟ ତେକ୍ଷଣାମ୍ । ବିଚିତ୍ରବସ୍ତ୍ରସଂଛନ୍ନାଂ ହାରକେୟୂର ଭୂଷଣମ୍ (୫୩)

ବିଚିତ୍ରାଭରଣୋପେତାଂ ରତ୍ନହାରାବଲମ୍ବିତାମ୍ । ପୀନୋନ୍ନତକୁଚଂ ରମ୍ୟାଂ ବିଶ୍ୱକର୍ମା ବିନିର୍ମମେ (୫୪)

୮ । ବ୍ରହ୍ମପୁରାଣ ୧୬୬ ଅଧ୍ୟାୟ ।

୯ । ନାରଦପୁରାଣ – ଉତ୍ତରଭାଗ ୫୪ ଅଧ୍ୟାୟ ।

୧୦ । ପଦ୍ମପୁରାଣ - ପାତାଳଖଣ୍ଡ ୧୬-୨୨ ଅଧ୍ୟାୟ ।

୧୧ । ଦିବ୍ୟସିଂହାସନଗତୋ ଭଦ୍ରାବଳସୁଦର୍ଶନୈଃ ।। ଶଙ୍ଖଚକ୍ରଗଦାପଦ୍ମ ଲସଦ୍ବାହୁର୍ଜନାର୍ଦ୍ଦନଃ । ଗଦାମୂଷଳ ଚକ୍ରାବ୍ଜଂ ଧାରୟନ୍ ପନ୍ନଗାକୃତିଃ ।। ଛତ୍ରାକୃତିଫଣାସପ୍ତମୁକୁଟୋଜ୍ଜ୍ୱଳ କୁଣ୍ଡଳଃ । ସୁଭଦ୍ରା ଗୌରବଦନା ବରାବ୍ଜାଭୟଧାରିଣୀ (ପୁରୁଷୋତ୍ତମ ମାହାତ୍ମ୍ୟ ୮.୧୯)

୧୨ । ସ୍କନ୍ଦପୁରାଣ-ପୁରୁଷୋତ୍ତମ ମାହାତ୍ମ୍ୟ (୧୯.୧୧.୧୯)

୧୩ । ତତ୍ରୈବ (୧୯.୩୬-୪୬)

୧୪ । ତତ୍ରୈବ (୧୮.୩୬-୩୮)

୧୫ । ନୀଳାଦ୍ରି ମହୋଦୟ-ସୂତସଂହିତା (୪ ୬-୧୩)

୧୬ । ବନମାଳୀ ପୀତବାସଃ ଶଙ୍ଖଚକ୍ରଧରଃ ଶ୍ରୀହରିଃ, ହଳପାଣି ର୍ଗଦାପାଣିଃ ଫଣାବିକଟ ମସ୍ତକମ୍ । ସୁଭଦ୍ରା ପଦ୍ମହସ୍ତାଚ ସ୍ତମ୍ଭରୂପଂ ସୁଦର୍ଶନମ୍ (କପିଳ ସଂହିତା ୪.୧୪-୧୫)

୧୭ । ବୃହତ୍ ସଂହିତା-ପ୍ରତିମାଲକ୍ଷଣାଧ୍ୟାୟ (୩୧ ୩୯)

୧୮ । ନନ୍ଦଗୋପଗୃହେ ଜାତା ଯଶୋଦା ଗର୍ଭସମ୍ଭବା । ତତସ୍ତୌ ନାଶୟିଷ୍ୟାମି ବିନ୍ଧ୍ୟାଚଳ ନିବାସିନୀ (ଚଣ୍ଡୀ ୧୧-୪୨)

୧୯ । ସ୍କନ୍ଦପୁରାଣ-ପୁରୁଷୋତ୍ତମ ମାହାତ୍ମ୍ୟ (୧୦.୧୮.୩୭)

୨୦ । ତତ୍ରୈବ (୧୨.୭୧.୮୦)

୬୧ । ପ୍ରାସାଦଃ ପୁରୁଷୋତ୍ତମସ୍ୟ ନୃପତିଃ କୋନାମ କର୍ତ୍ତୁଂକ୍ଷମଃ ।
ତଦୌତ୍ୟାଦି ନୃପୈରୁପେକ୍ଷତମୟଂ ଚକ୍ରେ୬ଥ ଗଙ୍ଗେଶ୍ୱରଃ ।।
(ରାଜରାଜଦେବ ଗୟଙ୍କର ଦାସଗୋବା ତାମ୍ରଶାସନ)

୬୨ । କ) ଅପାଣିପାଦୋ ଜବନୋ ଗ୍ରହୀତା ପଶ୍ୟତ୍ୟ ଚକ୍ଷୁଃ ସଶୃଣୋତ୍ୟକର୍ଣ୍ଣଃ ।
ସ ବେତ୍ତି ବେଦ୍ୟଂ ନ ଚ ତସ୍ୟାସ୍ତି ବେତ୍ତା ତମାହୁରଗ୍ର୍ୟଂ ପୁରୁଷଂ ମହାନ୍ତମ୍
(ଶ୍ୱେତାଶ୍ୱେ... -୧୯)

ଖ) ଯତ୍ ତଦଦ୍ରେଶ୍ୟମଗ୍ରାହ୍ୟମ୍ ଗୋତ୍ରମ୍ ବର୍ଣ୍ଣମଚକ୍ଷୁଃ ଶ୍ରୋତ୍ରଂ ତଦପାଣିପାଦଂ
ନିତ୍ୟଂ ବିଭୁଂ ସର୍ବଗତଂ ସୁସୂକ୍ଷ୍ମଂ ତଦବ୍ୟୟଂ ତଦ୍ଭୂତ ଯୋନିଂ ପରିପଶ୍ୟନ୍ତି-
ଧୀରାଃ । (ମୁଣ୍ଡକ ୧.୧.୬)

୬୩ । ଚିକିତ୍ସକାନ୍ ଦେବଲକାନ୍ ମାଂସବିକ୍ରୟିଣସ୍ତଥା ।
ବିପଣେନ ଚ ଜୀବନ୍ତୋ ବର୍ଜ୍ୟାଃ ସ୍ୟୁର୍ହବ୍ୟକବ୍ୟୟୋଃ (ମନୁ ୩.୧୫୨)

୬୪ । ତତ୍ରୋଧଃ ସ୍ୱର୍ଣ୍ଣପୀଠେ ଚ ସ୍ୱର୍ଣ୍ଣମନ୍ଦିର ମଣ୍ଡିତେ ।
ତନ୍ମଧ୍ୟେ ମଣିମାଣିକ୍ୟ ରତ୍ନସିଂହାସନୋଜ୍ଜ୍ୱଳେ ।
ତତ୍ରୋପରି ପରନନ୍ଦଂ ବାସୁଦେବଂ ଜଗଦ୍‌ଗୁରୁମ୍ ।
ତ୍ରିଗୁଣାତୀତତଦ୍‌ରୂପମ୍ ସର୍ବକାରଣ କାରଣମ୍ ।
ଇନ୍ଦ୍ରନୀଳ ଘନଶ୍ୟାମଂ ନୀଳକୁଞ୍ଚିତ କୁନ୍ତଳମ୍ ।
ପଦ୍ମପତ୍ର ବିଶାଳାକ୍ଷଂ ମକାରକୃତି କୁଣ୍ଡଳମ୍ ।
ଚତୁର୍ଭୁଜଂ ମହଦ୍ଧାମ ଜ୍ୟୋତି-ରୂପ ସନାତନମ୍ ।
ଆଦ୍ୟନ୍ତରହିତଂ ନିତ୍ୟଂ ପ୍ରଧାନ ପୁରୁଷୋତ୍ତମମ୍ ।
ଶଙ୍ଖଚକ୍ର ଗଦାପଦ୍ମ ଧାରିଣଂ ବନମାଳିନମ୍ ।
ପୀତାମ୍ବର ମତିସ୍ନିଗ୍ଧଂ ଦିବ୍ୟଭୂଷଣ ଭୂଷିତମ୍ ।

(ବ୍ରହ୍ମସଂହିତା-୫ମ ଅଧ୍ୟାୟ, ଡକ୍ଟର ସତ୍ୟନାରାୟଣ ରାଜଗୁରୁଙ୍କ ଓଡ଼ିଶା ଅଭିଲେଖମାଳା (ଇଂରାଜୀ) - ତୃତୀୟଭାଗ ଦ୍ୱିତୀୟଖଣ୍ଡ ପୃ-୪୦୨ରୁ ଉଦ୍ଧୃତ)

୬୫ । ଉଦଗ୍ର ଦୋଷାଦ ପଥପ୍ରବର୍ତ୍ତନ ସ୍ଖଳଦ୍‌ଗତୀନ୍ (?) ଶ୍ରୁତିଦୃଷ୍ଟି ବିଭ୍ରମୈଃ ।
ଚକାର ତତ୍ତ୍ୱପ୍ରତିପତ୍ତି ସମ୍ପଦାସ୍‌ଗଦଂ ପୁରାଣାନି ପୁନର୍ନିବାନି ଯଃ ।।୧୨।।
(Epiqraphia Indica-VOL. XXIX PP. 121-123)

୭୬ । ଯେତେ ବୋଲି ରାଜା ପାଇଁ ଫେଡଲା କପାଟ ।
କିରାତ ବ୍ରାହ୍ମଣ ଦୁହିନ୍ତି ପାଇଲେକ ଭେଟ ।
ଦେଖିଲା ପ୍ରତ୍ୟକ୍ଷେ ପାଷାଣରେ ହୋଇଛି ତିନିମୂର୍ତ୍ତି ।
କୃଷ୍ଣ ଶୁକଳ ଦ୍ୱାନ୍ତୀତ ବିରାଜଇ ଜ୍ୟୋତି ।
ସତ୍ୱ ରଜ ତମ ଯେ ତିନିଗୁଣ କାୟେ ।
କର ଚରଣ ନାହିଁ ଅଙ୍ଗୁଷ୍ଠି ନାହିଁ ନା ଉପାୟେ ।
ନାସା କର୍ଣ୍ଣ ନୟନ ଲଲାଟ ଯେ ନଦିଶଇ ଶିଖା ।
ମନ୍ତ୍ରା ବଉଦ ମୂର୍ତ୍ତି ବିକାଶଇ ତିନିଶାଖା ।
ଜାରଶବର ବୋଇଲା ହୋ ମନ୍ଦକୃତ୍ୟ କଲୁରାୟେ ।
ଆଜକଥିଲେ ଦେଖନ୍ତୁ ଜଗନ୍ନାଥଂକ ପଦ୍ମପାୟେ ।
ଦେଖନ୍ତୁ କରସ୍ଥଳ ଅଙ୍ଗୁଷ୍ଠି କର୍ଣ୍ଣ ନାସାଆଖି ।
କଳିକାଳ ଜନେ ଯେ ହୋଅନ୍ତେ ବଡ଼ ସୁଖୀ ।
ପଞ୍ଚନଦ ପଞ୍ଚ ଅଙ୍ଗୁଷ୍ଠି ହରିର କର୍ଣ୍ଣ ଶିଖା ।
ଆହୁଟ ଦଣ୍ଡ ବିକାଶଇ ହରିର ବକ୍ଷସ୍ଥଳେ ରେଖା ।
ସତ୍ୱେକୁଂକୁମ ଯେ ବ୍ରହ୍ମାର ମୂରତି ।
ତମେ ଶୁକଳ ମହାତମା ମହାଦେବ ଉତପତ୍ତି ।
ରଜେ ନାରାୟଣ ସେ କୃଷ୍ଣବର୍ଣ୍ଣ କଳା ।
ବ୍ରହ୍ମା ବିଷ୍ଣୁ ମହେଶ୍ୱର ଯେ ତିନି ଯେ ମେଖଳା ।
ବଳଭଦ୍ର ସୋହୋଦ୍ରା କୃଷ୍ଣ ହୋଇଲେ ତିନିରୂପ ।
ବଉଦବାମନ ଯେତ୍ହା କେ କରୁ ସଂଚେପ ।
ଯେ ରୂପ ଯେ କଲ୍ପିଲେ ଦେବସ୍ୱାମୀ ।
ତିନି ମୂର୍ତ୍ତିକି ପଞ୍ଚଭୂତେ ଚିହ୍ନି ଆମି ॥

(ମହାଭାରତ ସଂ-ଆର୍ତ୍ତବଲ୍ଲଭ ମହାନ୍ତି । ବନପର୍ବ, ଦ୍ୱିତୀୟଖଣ୍ଡ, ପୃ ୮୯-,—
୯୦ ପଦ୍ୟ ୧୯୯—୨୦୯)

୨୭ । ଶ୍ରୀଜଗନ୍ନାଥ ତତ୍ତ୍ୱ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ ।
(ଶ୍ରୀକ୍ଷେତ୍ର ଓ ଶ୍ରୀଜଗନ୍ନାଥ ପୃ ୫୧-୭୫)



# ପୁରୁଷୋତ୍ତମ ଓ ଶ୍ରୀଜଗନ୍ନାଥ

**ଶ୍ରୀ ବନମାଳୀ ସୁଆର**

ମାନବର ଧର୍ମ ଚେତନାରେ ଯୁଗେଯୁଗେ ଶ୍ରୀଜଗନ୍ନାଥ ମୁଖ୍ୟସ୍ଥାନ ଗ୍ରହଣ କରି ଆସିଛନ୍ତି । ପବିତ୍ର ମହୋଦଧିର ଅନତି ଦୂରରେ ଦଣ୍ଡାୟମାନ ବଡ଼ଦେଉଳ ସମଗ୍ର ହିନ୍ଦୁ ଜଗତରେ ଏକମାତ୍ର ମହାନ୍ ସମନ୍ୱୟକାରୀ ଶକ୍ତିରୂପେ ଆନ୍ତର୍ଜାତିକ ସ୍ତରରେ ପ୍ରତିଭାତ ହୋଇଅଛି । ଶ୍ରୀଜଗନ୍ନାଥ ଚେତନା ଓ ମାନବର ଧର୍ମ ଚେତନା ଏକ ଓ ମୌଳିକ ।

ଶ୍ରୀଜଗନ୍ନାଥ ହିଁ ପୁରୁଷୋତ୍ତମ ଓ ପୁରୁଷୋତ୍ତମ ହିଁ ଶ୍ରୀଜଗନ୍ନାଥ । ମାନବର ଧର୍ମ ଚେତନାର ଏହାହିଁ ବିଶେଷତ୍ୱ । ଏଠାରେ ଧାର୍ମିକ ଦ୍ୱନ୍ଦ୍ୱର ଅବକାଶ ନାହିଁ । ଏହାର ସୁସମାଧାନ ଏହି ଶ୍ରୀକ୍ଷେତ୍ରରେ, ଯାହାକୁ ଅତୀତରେ ପୁରୁଷୋତ୍ତମ ଧାମ କୁହାଯାଉଥିଲା, ସେଠାରେ ସମ୍ଭବ ହୋଇଅଛି । ସର୍ବୋପରି ପୁରୁଷୋତ୍ତମ ଚେତନାହିଁ ଶ୍ରୀଜଗନ୍ନାଥ ରୂପେ ପ୍ରମାଣିତ ଓ ସ୍ୱୀକୃତ ହୋଇପାରିଛି ।

ବର୍ତ୍ତମାନ ପୁରୁଷୋତ୍ତମ ତତ୍ତ୍ୱ ବିଷୟରେ ଏକ ସଂକ୍ଷିପ୍ତ ବିଶ୍ଳେଷଣ କରିବା ଆବଶ୍ୟକ । ଏହି ତତ୍ତ୍ୱ ମାନବର ସର୍ବଶ୍ରେଷ୍ଠ ଚେତନା । ନିର୍ଗୁଣ ବ୍ରହ୍ମଙ୍କୁ ଉପଲବ୍ଧି କରିବା ପାଇଁ ଜ୍ଞାନ, କର୍ମ ଓ ଭକ୍ତିର ସମନ୍ୱୟ ଆବଶ୍ୟକ । ଇତିହାସରେ ଏହି ସମନ୍ୱୟବାଦ ମାନବର ଧର୍ମ ଚେତନାରେ ସର୍ବବାଦୀ ସମ୍ମତ ରୂପେ ପ୍ରତିଷ୍ଠିତ ହେଲା । ଏହାକୁ ତିଲକଙ୍କ ମତ ଅନୁଯାୟୀ ଆଜକୁ ପ୍ରାୟ ୩୦୦୦ (ତିନିହଜାର) ବର୍ଷ ତଳର ଏକ ପ୍ରବହମାନ ଧାରା ରୂପେ ଗ୍ରହଣ କରାଯାଇଛି । ପୁରୁଷୋତ୍ତମ ଉଭୟ ନିର୍ଗୁଣ ଓ ସଗୁଣ । ଏକ ପକ୍ଷରେ ସେ ଶମ, ଶାନ୍ତ ଓ ଅଖିଳାତ୍ମା, ଅନ୍ୟ ପକ୍ଷରେ ଜୀବର ଗତି, ଭର୍ତ୍ତା, ପ୍ରଭୁ, ସାକ୍ଷୀ, ଶରଣ ଯଜ୍ଞ ତପସ୍ୟାର ଭୋକ୍ତା ଓ କର୍ମର ଫଳ ବିଧାତା । ସର୍ବଭୂତ ପ୍ରୀତି ଓ ପରମାତ୍ମାଙ୍କଠାରେ ସର୍ବଭାବରେ ଆତ୍ମସମର୍ପଣହିଁ ପୁରୁଷୋତ୍ତମ ତତ୍ତ୍ୱଜ୍ଞାନ । ପଞ୍ଚଦଶ ଅଧ୍ୟାୟ ଷୋଡ଼ଶଠାରୁ ଅଷ୍ଟାଦଶ ଶ୍ଳୋକରେ (ଶ୍ରୀମଦ୍ ଭଗବତଗୀତା) ପ୍ରମାଣିତ ।

ଏହି ବ୍ୟକ୍ତମୂର୍ତ୍ତି ବା ଚେତନାତ୍ମକ ଜଗତ୍—ବ୍ରହ୍ମାଙ୍କଠାରୁ ଆରମ୍ଭକରି ସ୍ଥାବର ପର୍ଯ୍ୟନ୍ତ ସମଗ୍ର ଶରୀର-କ୍ଷରଭାବ (କ୍ଷରପୁରୁଷ) । ଦେହ ବିନଷ୍ଟ ହେଲେ ଯେ ନିର୍ବିକାର ଭାବରେ ଅବସ୍ଥାନ କରନ୍ତି - ସେ ଅକ୍ଷର ପୁରୁଷ । କ୍ଷର-ପ୍ରକୃତି ଓ ଅକ୍ଷର ଜୀବାତ୍ମା । ଏହି ଦୁଇଟିରୁ ଯେ ଅତୀତ ସେ ପରମାତ୍ମା ପୁରୁଷୋତ୍ତମ ।

ଏହି ପରମାତ୍ମା ପୁରୁଷୋତ୍ତମ ଚେତନା ଯେ ଗୀତା ଧର୍ମ ବେଳକୁ ସୃଷ୍ଟି ହେଲା ତାହାନୁହେଁ । ପୃଥିବୀର ପ୍ରାଚୀନତମ ଗ୍ରନ୍ଥ ଋକ୍‌ବେଦର ପୁରୁଷସୂକ୍ତରେ ଆର୍ଯ୍ୟଋଷି ସେହି ଏକ ପରମାତ୍ମା ପୁରୁଷୋତ୍ତମଙ୍କୁ ମଧ୍ୟ ଉପଲବ୍ଧି କରିଥିଲେ । ଏହା ଖ୍ରୀଷ୍ଟପୂର୍ବ ପ୍ରାୟ ୪୫୦୦ ବର୍ଷ ତଳେ ରଚିତ ହୋଇଥିଲା । କିନ୍ତୁ ଏହା ଏକ ଚିରନ୍ତନ ସତ୍ୟ । ଏହାର ପ୍ରମାଣ ସ୍ୱୟଂସିଦ୍ଧ । ଏହା ସ୍ମରଣାତୀତ କାଳର ସିଦ୍ଧାନ୍ତ ।

ପୁରୁଷସୂକ୍ତ କହେ :—

"ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍ ।
ସ ଭୂମିଂ ସର୍ବତଃ ସ୍ପୃତ୍ୱା ତ୍ୟତିଷ୍ଠଦ୍‌ଦଶାଙ୍ଗୁଳମ୍ ।୧।

ପୁରୁଷଃ ଏ ବେଦଂ ସର୍ବଂ ଯଦ୍‌ଭୂତଂ ଯଚ୍ଚ ଭାବ୍ୟମ୍ ।
ଉପମୃତତ୍ୱସ୍ୟେଶାନୋ ଯଦନ୍ନେନା ତିରୋହତି ।୨।

ଏତାବାନସ୍ୟ ମହିମା ତୋ ଜ୍ୟାୟାଂଶ୍ଚପୁରୁଷଃ
ପାଦୋଽସ୍ୟ ବିଶ୍ୱାଭୂତାନି ତ୍ରିପାଦସ୍ୟା ମୃତିଂଦିବି ।୩।

ଏହି ବେଦୋକ୍ତ ମନ୍ତ୍ରରୁ ସ୍ପଷ୍ଟ ପ୍ରମାଣ ମିଳେ ଯେ ପୁରୁଷୋତ୍ତମ ଚେତନା ମାନବର ସର୍ବଶ୍ରେଷ୍ଠ ଧର୍ମ ଚେତନା । ଏହି ଅପୌରୁଷେୟ ବେଦ ହିଁ ସତ୍ୟ । ସ୍ମରଣାତୀତ କାଳରୁ ଏହି ଚିରନ୍ତନ ସତ୍ୟ ଓ ଜୀବନ ମୃତ୍ୟୁର ରହସ୍ୟ ଉପଲବ୍ଧି ପାଇଁ ବହୁ ପ୍ରଚେଷ୍ଟା । ଏହି ପ୍ରଚେଷ୍ଟାର ମୂଳରେ ନିହିତ ଦିବ୍ୟଜୀବନ ଲାଭ ଓ ଦିବ୍ୟତ୍ୱର ଉପଲବ୍ଧି । ଏଥିରେ ଅଛି ମାନବର ମୋକ୍ଷ । ଶ୍ରୀପୁରୁଷୋତ୍ତମ ତତ୍ତ୍ୱଜ୍ଞାନର ଏହାହିଁ ସ୍ୱରୂପ । ଏହା ସନାତନ । ସମଗ୍ର

ବିଶ୍ୱରେ ଏହି ଧର୍ମ ଚେତନା ମାନବର ମନ ଓ ହୃଦୟକୁ ଯୁଗେ ଯୁଗେ ଆନ୍ଦୋଳିତ କରିଅଛି ।

ପରମ ସୌଭାଗ୍ୟ ବଶତଃ ଆମ୍ଭମାନଙ୍କର ଉତ୍କଳ ପ୍ରଦେଶରେ ପୁରୀ ଶ୍ରୀକ୍ଷେତ୍ର ପୁରୁଷୋତ୍ତମ ଧାମରେ ଶଙ୍ଖନାଭି ମଣ୍ଡଳରେ ଶ୍ରୀଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ନାମରେ ତିନିଗୋଟି ମୂର୍ତ୍ତି ପ୍ରତିଷ୍ଠିତ ହୋଇଅଛି । କିନ୍ତୁ ଜଗନ୍ନାଥଙ୍କ ନାମରେ ଏହିସ୍ଥାନ ସମଗ୍ର ପୃଥିବୀରେ ପ୍ରସିଦ୍ଧ । ନୀଳପର୍ବତ କନ୍ଦରରେ ଜାରାଶବର ଦ୍ୱାରା ପୂଜିତ ଅଚିନ୍ତନୀୟ ଶକ୍ତି । ପୁରାଣ ତାଙ୍କୁ ବିଶ୍ୱାବସୁ ବୋଲି ବର୍ଣ୍ଣନା କରିଅଛି । ଜଗନ୍ନାଥଙ୍କୁ ସେହି ଶବର ବଂଶୀୟ ସେବାୟତମାନେ ଅଦ୍ୟାବଧି ପୂଜା କରନ୍ତି । ପ୍ରତିବର୍ଷ ଅଣସର ନୀତିରେ ଏହା ପ୍ରତିଷ୍ଠିତ । ସ୍ୱୟଂ ଲେଖକ ସେହି ସମୟର ସେବାରେ ନିୟୋଜିତ ଥାଆନ୍ତି । ଏହା ତାଙ୍କର ନିଜସ୍ୱ ଅନୁଭୂତି ।

ଐତିହାସିକ ମାନଙ୍କ ମତରେ ଆର୍ଯ୍ୟ ଓ ତାଙ୍କ ପୂର୍ବରୁ ଦ୍ରାବିଡ ଓ ତାଙ୍କ ପୂର୍ବରୁ ଆଦିମ ଜାତିର ପୁରୁଷୋତ୍ତମ ଚେତନା ଥିଲା ମୌଳିକ ଧର୍ମଧାରଣା । ସୁତରାଂ ଜଗନ୍ନାଥଙ୍କ ଚେତନା ନିଶ୍ଚିତ ପ୍ରାକ୍ ବୈଦିକ । ଋକ୍‌ବେଦ (୧।୧୬୪।୪୬) ମତେ "ଏକଂ ସଦ୍ ବିପ୍ରା ବହୁଧା ବଦନ୍ତି" । ଯିଏ ଯେଉଁ ଭାଷା ଓ ଭାବରେ ବ୍ୟକ୍ତକଲେ ମଧ୍ୟ ଇତିହାସର କଷଟି ପଥରରେ ପୁରୁଷୋତ୍ତମ ଓ ଜଗନ୍ନାଥ ଅଭିନ୍ନ ଭାବରେ ମାନବର ଧର୍ମ ଧାରଣାରେ ପ୍ରତିଭାତ ହୋଇଅଛନ୍ତି । ଜଗନ୍ନାଥଙ୍କୁ ଦାରୁବ୍ରହ୍ମ କୁହାଯାଏ । ଦାରୁ ଅର୍ଥ କାଠ । ଜଗନ୍ନାଥଙ୍କ ମୂର୍ତ୍ତି ନିମକାଠରେ ନିର୍ମିତ । ଏହା ମଧ୍ୟ ସ୍ମରଣାତୀତ କାଳର । ଋକ୍ ବେଦ କହନ୍ତି :—

"ଆଦୌ ଯଦ୍‌ଦାରୁ ପ୍ଲବତେ ସିନ୍ଧୋଃ ପାରେ ଅପୁରୁଷମ୍ ।
ତଦାଲଭସ୍ୱ ଦୁର୍ହଣୋ ତେନ ଯାହି ପରଂ ସ୍ଥଳମ୍ ।"

ସୁତରାଂ ଅପୌରୁଷେୟ ଦାରୁବ୍ରହ୍ମ କଳ୍ପନା ପ୍ରାଚୀନତମ ।•ତେଣୁ ଦାରୁବ୍ରହ୍ମ ରୂପି ଜଗନ୍ନାଥ ହିଁ ପୁରୁଷୋତ୍ତମ ରୂପେ ଖ୍ୟାତ ଓ ସ୍ୱୀକୃତ । ତ୍ରିମୂର୍ତ୍ତି ପରିକଳ୍ପନାରେ ସୁଭଦ୍ରା କ୍ଷର ପ୍ରକୃତି ରୂପିଣୀ ଓ ବଳଭଦ୍ର-ଅକ୍ଷର ପୁରୁଷ । ଜଗନ୍ନାଥ ପୁରୁଷୋତ୍ତମଙ୍କ ଶ୍ରୀମୁଖଦର୍ଶନ କଲାବେଳେ ସ୍ୱତଃ "ଅନାଦିମଧ୍ୟାନ୍ତ-ମନନ୍ତବୀର୍ଯ୍ୟ-ମନନ୍ତବାହୁଂ ଶଶିସୂର୍ଯ୍ୟନେତ୍ରମ୍ । ପଶ୍ୟାମି ତ୍ୱାଂ ଦୀପ୍ତହୁତାଶବକ୍ତ୍ରଂ ସ୍ୱତେଜସା ବିଶ୍ୱମିଦଂ

ତପନ୍ତମ୍’’ (ଶ୍ରୀମଦ୍ ଭଗବତ ଗୀତା) ଏହି ବିଶ୍ୱ ବିଭୁତି ମନରେ ନାଚିଉଠେ । ସେହି ମାତ୍ର ସନାତନ ଧର୍ମର ରକ୍ଷକ ଓ ଚିରନ୍ତନ ପୁରୁଷ । ଜନ୍ମ ଓ ମୃତ୍ୟୁର ମୁକ୍ତିଦାତା । ଗୀତାର ଅଷ୍ଟାଦଶ ଅଧ୍ୟାୟର ପଞ୍ଚଷଠି ଓ ଛଅଷଠି ଶ୍ଳୋକରେ ଭଗବାନ କହନ୍ତି—ଭକ୍ତ ପରମାତ୍ମାଙ୍କର ଅତ୍ୟନ୍ତ ପ୍ରିୟହେତୁ ପରମାତ୍ମା ପୁରୁଷୋ-ତ୍ତମରେ ମନରଖି ଭକ୍ତିକରି ପୂଜା ଓ ନମସ୍କାର କଲେ ଓ ସମସ୍ତ ଧର୍ମତ୍ୟାଗକରି ଜଗନ୍ନାଥ ପୁରୁଷୋତ୍ତମଙ୍କ ଶରଣାଗତ ହେଲେ ଭକ୍ତ ଅର୍ଥାତ୍ ମାନବ ଜନ୍ମ ଓ ମୃତ୍ୟୁରୁ ତଥା ସର୍ବପାପରୁ ମୁକ୍ତିପାଏ ।

ଏହି ରୂପେ ଜଗନ୍ନାଥ ଯୁଗେ ଯୁଗେ ପୁରୁଷୋତ୍ତମ ଚେତନାରେ ପ୍ରତିଭାତ ହୋଇ ମାନବର ଧର୍ମ ଧାରଣରେ ଏକମାତ୍ର ସତ୍ୟ ଓ ସିଦ୍ଧାନ୍ତ ରୂପେ ଅଗଣିତ ଭକ୍ତର ହୃଦୟ କନ୍ଦରରେ ଭକ୍ତି ତଥା ସାମ୍ୟ, ମୈତ୍ରି ଓ ପ୍ରେମର ଅବାରିତ ତରଙ୍ଗ ସୃଷ୍ଟି କରିବାରେ ଲାଗିଅଛନ୍ତି । ପଣ୍ଡିତ ନୀଳକଣ୍ଠଙ୍କ ମତ ଅନୁଯାୟୀ ବୈଦିକ ପ୍ରମାଣ ସିଦ୍ଧ ଏହି କ୍ଷେତ୍ରଟି ପୁରୁଷ ପୀଠ ଥିଲା । ଶବରମାନଙ୍କ ପୂଜିତ ନିମକାଠ ମୂର୍ତ୍ତି (ଜଗନ୍ନାଥ) ଏଠାରେ ସ୍ଥାପିତ ହେଲା । ଉଭୟର ମିଳନ ହେଲା । ଜଗନ୍ନାଥ ଓ ପୁରୁଷୋତ୍ତମ ଏକ ହେଲେ । ନିମକାଠ (ଦାରୁ) ନିର୍ମିତ ଜଗନ୍ନାଥଙ୍କ ପୂଜା ପ୍ରାକ୍ ବୈଦିକ ଓ ଏହା ନିଷାଦ ଶବର ଦେବତା । ଏହା ଶୂନ୍ୟ ଧର୍ମ ସମ୍ଭୁତ ଅଧ୍ୟାତ୍ମ ଧର୍ମ । ତାଙ୍କ ମତରେ “ପୁରୁଷ” ଶବ୍ଦ ମଧ୍ୟ ଦ୍ରାବିଡ଼ ଶବ୍ଦ । ତେଣୁ ପୁରୁଷୋତ୍ତମ ଚେତନା ପ୍ରାକ୍ ବୈଦିକ ସ୍ୱତଃ ପ୍ରମାଣିତ । ତେଣୁ ଦୁଇଟି ଯାକ ପ୍ରାକ୍ ବୈଦିକ ତତ୍ତ୍ୱର ମହାମିଳନରେ ଏକ ଅଭିନବ ମୌଳିକ ସାମ୍ୟ ଧର୍ମ ସୃଷ୍ଟି ହେଲା । ଏହା ଦାର୍ଶନିକ ନୀଳକଣ୍ଠଙ୍କ ଉକ୍ତି ହେଲେ ହେଁ ସର୍ବବାଦୀ ସମ୍ମତ ଅଟେ । “ଜଗନ୍ନାଥ ହିଁ ପୁରୁଷୋତ୍ତମ” ଏହା ଏହି ସଂକ୍ଷିପ୍ତ ସନ୍ଦର୍ଭର ସୌରଭ ମାତ୍ର ।



# ଭାବ ଭକ୍ତିରେ ଭଗବାନ

ଶ୍ରୀ ହରିହର ବାହିନୀପତି

ଭଗବାନ ଭକ୍ତର ଅଧୀନ କେବଳ ନୁହଁନ୍ତି, ତା'ର ଭକ୍ତି ବା ଭାବରେ ସର୍ବଦା ବନ୍ଧା ବୋଲି କୁହାଯାଇଥାଏ । ଦରିଦ୍ର ସୁଦାମାର ଖୁଦ ଭୁଜା ଖ ଇ ସେ ଆତ୍ମହରା ହୋଇ ପଡିଥିଲେ ଆନନ୍ଦରେ । ସେହିପରି ଶବରୀର ଅଇଁଠା କୋଳି ବା ଫଳମୂଳରେ ଭଗବାନ ରାମଚନ୍ଦ୍ର । ସାତଶହ କ୍ରୋଶ ପାର ହୋଇ ଆସିବା ପର୍ଯ୍ୟନ୍ତ, ସାଲବେଗ ପାଇଁ, ଅପେକ୍ଷା କରିଥିଲେ ରଥାରୂଢ ଜଗନ୍ନାଥ । ଆଉ ଭକ୍ତ ବଳରାମ ଦାସଙ୍କୁ ତାଚ୍ଛଲ୍ୟ ବା ତିରସ୍କାରକୁ ସହ୍ୟ କରି ନପାରି, ଦାସଙ୍କ ପିଲି ରଥରେ ରଥଯାତ୍ରା କରିବାକୁ ପଳାଇଥିଲେ ଚକ୍ରବର୍ତୀଙ୍କୁ ।

ଅତୀତର ଏ ସବୁ ଶୁଣା କଥା, ବର୍ତ୍ତମାନର ବୈଜ୍ଞାନିକ ରୁଚି ଓ ତଥାକଥିତ ଅଭିମତ ଭିତରେ ଖାପଖୁଆଇଲା ବେଳକୁ ଅନେକଙ୍କର ବିଚାର ଯେ ଏକତ ସେକଡ ହୋଇଯିବ, ଏଥିରେ ସନ୍ଦେହ ନାହିଁ । କିନ୍ତୁ ଭଗବାନ ଯେ ଜ୍ଞାନର ଜ୍ଞାନ..., ବିଜ୍ଞାନର ବିଜ୍ଞାନ.... ଅର୍ଥାତ୍ ଗୀତା ଭାଷ୍ୟରେ ଜ୍ଞାନ ବିଜ୍ଞାନ ଯୋଗ, ଏ କଥା ବୁଝାଇ କରିବାର କିଛି ଆବଶ୍ୟକତା ନାହିଁ । ଅର୍ଥାତ ଅବର୍ଣ୍ଣନୀୟ, ଅବ୍ୟକ୍ତ, ଅଚିନ୍ତ୍ୟ ଅସୀମ ଆଧ୍ୟାତ୍ମିକ ଶକ୍ତି ହେଉଛି ଭଗବାନ ସତ୍ତା..... ।

କେବଳ ବଡ଼ ବଡ଼ ସାଧକ, ଧର୍ମଯାଜକ କିମ୍ବା ଅସାଧାରଣ ଭକ୍ତ ମାନଙ୍କ ପାଖରେ ଜଗନ୍ନାଥଙ୍କ ଏହି ସତ୍ତା ଅନୁଭୂତ ହେଉଛି, ତାହା ନୁହେଁ। ଅନେକ ସାଧାରଣଙ୍କ ଜୀବନରେ ଏପରି ପ୍ରତ୍ୟକ୍ଷ ଅଭିଜ୍ଞତା ଆଜିକାଲି ମଧ୍ୟ ଘଟୁଥିବାର ଜଣାଯାଉଛି ।

ଲେଖକଙ୍କର କେତେକ ବ୍ୟକ୍ତିଗତ ଅନୁଭୂତି ବ୍ୟତୀତ ଅନେକଙ୍କର ଏଭଳି ପ୍ରତ୍ୟକ୍ଷ ଅଥଚ ରୋମାଞ୍ଚକର ବିବରଣୀ "ନିର୍ମାଲ୍ୟ" ପତ୍ରିକାରେ ପତ୍ରସ୍ଥ ହେବାକୁ ଆମର ହସ୍ତଗତ ହେଉଛି । ମୁଁ ସେହିପରି ଗୋଟିଏ ବିବରଣୀ, ଯାହାକି ମହାବାହୁଙ୍କର ଜଣେ ସୂପକାର ସେବକଙ୍କ ଠାରୁ ଅଳ୍ପଦିନ ତଳେ ଶୁଣିଛି, ତାହା ନିମ୍ନରେ ବର୍ଣ୍ଣନା କଲି । ସେଥିପାଇଁ ଜଗନ୍ନାଥେ ଯେ

କେବଳ ଜଗତର ନାଥ କିମ୍ବା ପରମ ପିତା ମାତା ନୁହଁନ୍ତି, ବରଂ ଡ଼ାକହାକ ଦେବତା ଭାବରେ କଥିତ ହୁଅନ୍ତି ।

ସୂପକାର କହିଲେ "ଭାଇନା" ଶୁଣନ୍ତୁ ! ପ୍ରକୃତରେ ସେ କିପରି ଡ଼ାକହାକ ଦେବତା, ଭକ୍ତର ବୋଲକରା, ଯଥାର୍ଥ ଭାବଗ୍ରାହୀ । ଥରେ ଜଣେ ପଇସାବାଲା ଲୋକ ମୋତେ ଭୋଗ ବରାଦ ଦେଲା । କହିଲା ମୁଁ ଅମୁକ ସୁଆରଙ୍କୁ ବରାଦ ଦେଇଥିଲି । ସେ ଯେଉଁ ଜିନିଷ ଯୋଗାଇବାକୁ କହିଲେ, ଏବଂ ଯେତେ ଟଙ୍କା ଦେବାକୁ କହିଲେ, ମୁଁ ସବୁ ଦେଲି । ଭଲହେଲେ ଅଧିକା ବକ୍‌ସିସ୍ ଦେବାକୁ ମଧ୍ୟ କହିଥିଲି । ସୁଆର ଭୋଗଦେଲେ ସତ, ହେଲେ ଯେତେ ସୁଆଦ ହେବବୋଲି ଆଶା କରୁଥିଲି, ହେଲାନାହିଁ । ସେଥିପାଇଁ ଆସିଛି ତୁମ ପାଖକୁ । ତୁମେ କରିଦେବ କି ? କୁଡ଼ିଆ ବଢ଼ିଆ ମହୁର । ଯାହା କହିବ ତାହା ଦେବି । ମୋର ଏ ବରାଦି ଭୋଗ ଜରୁରୀ ଦରକାର । ଦିଗୁଣା ଟଙ୍କା ଧର । (ସଂପୃକ୍ତ ଯଜମାନ କିମ୍ବା ଅଗରୁ ସେ କେଉଁ ସୁଆରଙ୍କ ପାଖେ ବରାଦ କରିଥିଲେ, ମୁଁ ଜାଣିଶୁଣି, ସେମାନଙ୍କର ନାମ ପ୍ରକାଶ କରୁ ନାହିଁ ।)

ନୂଆ ସୂପକାର, ଶ୍ରୀ ଲୋକନାଥ ସୁଆର ବରାଦ ନେଲେ । ସେ ଅନୁଭବ କଲେ, ଏଇ ବରାଦ ପଛରେ ସଂପୃକ୍ତ ଧନାଢ୍ୟ ଯଜମାନଙ୍କର ଅଛି କିଛିଟା ଧନଧାନ୍ୟର ଅହମିକା ବିତ୍ତଶାଳୀନତାର ଆଭିଜାତ୍ୟ ପଇସା ବଳରେ ସବୁକିଛି ହୋଇପାରିବ ସମ୍ଭବ, ଅସମ୍ଭବ ।

ଯୋଗକୁ ଲୋକନାଥ ସୁଆରଙ୍କର ସେଦିନ ଆଉ ଅନେକ ଯଜମାନଙ୍କର ବରାଦ ଥାଏ । ବିଶେଷତଃ କୌଣସି ଭଦ୍ରବ୍ୟକ୍ତିଙ୍କର କୌଣସି ନିମିତ୍ତ ପାଇଁ ବହୁତ ଗୁଡ଼ିଏ ମହାପ୍ରସାଦର ବରାଦ, ପୁଣି ଯୋଗକୁ ସୁଆରେ ସେଦିନ ତରତର ହୋଇ ଦେଉଳକୁ ସସ୍‌କାଳିଆ ବାହାରିଲା ବେଳକୁ ବିଚରା ଜଣେ ଗରିବ ଯଜମାନ ସୁଆରଙ୍କ ଘରକୁ ଆସି ମୋଟେ ଦଶଟଙ୍କା ଦେଇ ବରାଦ ଦେଇଗଲା ସେହି ଆକାରର ଗୋଟିଏ ମହୁର କୁଡ଼ିଆ ପାଇଁ । ମନରେ ତାଙ୍କର ଜଗନ୍ନାଥଙ୍କ ପ୍ରତି ଭରା ଅନୁଗତ୍ୟ, ଯାହା କହନ୍ତି ନିଷ୍କଳ ଭକ୍ତି ।

ସେ ଦିନ ଯଥା ସମୟରେ ସରିଲା ବଲ୍ଲଭ । ପରେ ପରେ ବଢ଼ିବ ସକାଳ ଧୂପ । ସୁଆରେ ତାଙ୍କ ସହଯୋଗୀମାନଙ୍କୁ ଧରି ଲାଗି ପଡ଼ିଆଆନ୍ତି ତାଙ୍କ

ଯଜମାନ ମାନଙ୍କର ବରାଦ ଭୋଗ ଯଥା ସମୟରେ ରନ୍ଧି ମହାପ୍ରଭୁଙ୍କ ପାଖରେ ଭୋଗପାଇଁ ବାଢ଼ିବାକୁ ଦେବାତ ସେଦିନକୁ ବେଶି ଭୋଗ ବରାଦ ଥିବାରୁ ସେ ଲଣ୍ଡଭଣ୍ଡ ହେଉ ଥାଆନ୍ତି । ଗୁହୁଁ ଗୁହୁଁ ଧୂପର ଦ୍ୱିତୀୟ ଘଣ୍ଟି ବାଜିଲା । ପୂଜା ପଣ୍ଡା ମାନଙ୍କର ତୃତୀୟ ଘଣ୍ଟି ବେଳକୁ ପୂଜା ଶେଷ ହୋଇଯିବ । ଆଳତୀ ହୋଇ ଟେରା ପଡ଼ିଯିବ, ଅର୍ଥାତ୍ ଦ୍ୱାର ବନ୍ଦ ହୋଇଯିବ । ସୁଆର ଆଶ୍ୱସ୍ତ ହେଲେ ଯେ ଦ୍ୱିତୀୟ ଘଣ୍ଟିବେଳକୁ ତାଙ୍କର ସମସ୍ତ ବରାଦି ଭୋଗ ଶ୍ରୀମନ୍ଦିରର ରୋଷଘରେ ରନ୍ଧାସରି ମହାପ୍ରଭୁଙ୍କ ଆଗକୁ ପଠାଯାଇ ପାରିଛି । ହଠାତ୍ ତାଙ୍କର ଦୃଷ୍ଟିପଡ଼ିଲା ଗୋଟିଏ ଛୋଟିଆ କୁଡ଼ିଆ ଉପରେ, ଯେଉଁଥିରେ କି କଟା ପରିବା ଓ ମସଲାସବୁ ଦିଆଯାଇ ରୋଷଘରେ ସେହିପରି ଥୁଆହୋଇ ରହିଛି । ସେ ଦିନ ରୋଷ ଘରର ଭିଡ଼ କର୍ମ ଜଂଜାଳ ଯୋଗୁ ସମ୍ଭବତଃ ଯଥା ସମୟରେ ସେ କୁଡ଼ିଆଟି ସେ ରନ୍ଧିବାକୁ ଭୁଲି ଯାଇଛନ୍ତି । କିନ୍ତୁ ବର୍ତ୍ତମାନ ଆଉ ଉପାୟ କଣ ? ରୋଷଘର ଚୁଲିରେ ଥୋଇ ରନ୍ଧିବାକୁ ଆଉ ବେଳକାହିଁ ? ପୂଜାପଣ୍ଡାଙ୍କ ଦ୍ୱିତୀୟ ଘଣ୍ଟି ବାଜି-ସାରିଲାଣି । ସୁଆରଙ୍କର ମନେ ପଡ଼ିଲା, ବିଚରା ଗରିବ ଲୋକଟି କି ନେହୁରା ହୋଇ ଜଗନ୍ନାଥଙ୍କ ପାଖରେ କୃତ୍ୟ କୃତ୍ୟ ହୋଇ ବରାଦ ଦେଇଥିଲା ଏହି ମହୁର କୁଡ଼ିଆଟି ।

ସଙ୍ଗେ ସଙ୍ଗେ ସେହି କୁଡ଼ିଆଟିର ଉପରୁ ଅଳ୍ପକିଛି କଟା ପରିବା ବାହାର କରି ଦେଇ ସେଥିରେ ରୋଷ ଘରେ ଥିବା କିଛି ଗରମପାଣି ଭର୍ତ୍ତି କରିଦେଇ ତାଙ୍କ ସହଯୋଗୀଙ୍କୁ ବରାଦ ଦେଲେ, ତତ୍‌କ୍ଷଣାତ୍ କୁଡ଼ିଆଟି ନେଇ ଭୋଗପାଇଁ ବଢ଼ା ହୋଇଥିବା କେତେକ ଗରମ କୁଡ଼ିଆ ଉପରେ ଏହି କୁଡ଼ିଆଟି ଥୋଇ ତା' ଉପରେ ପୁଣି ଆଉ କେତୋଟି ଗରମ କୁଡ଼ିଆ ଥୋଇ ଦେବାକୁ । କାଳିଆର ଯାହା ବରାଦ ଥିବ ।

ତୃତୀୟ ଘଣ୍ଟି ବାଜି କାଳେ ଟେରା ପଡ଼ିଯିବ, ଆଶଂକାରେ ସହଯୋଗୀ ସେହି ଗରମପାଣି ମିଶା କଞ୍ଚା ପରିବା କୁଡ଼ିଆଟି ସୁଆରଙ୍କ ନିର୍ଦ୍ଦେଶ-ମତେ ଭୋଗ ସ୍ଥାନରେ ରଖିଦେଇ ଆସିଲେ । ପରେ ପରେ ତୃତୀୟ ଘଣ୍ଟି ବାଜି ଟେରା ପଡ଼ିଲା ।

ଯଥା ସମୟରେ ଧୂପ ପରେ ଭୋଗସବୁ ସୁଆରଙ୍କ ଖଦାକୁ ଆସିଲା । ସେଠାରୁ ଯିଏ ଯେମିତି ମହାପ୍ରସାଦ ନେବେ ବା ପାଇବେ, କିମ୍ବା ସୁଆର ବରାଦମତେ ଯଥା ସ୍ଥାନକୁ ପଠାଇବେ ।

ପଠାଇବାର ଏହି ପ୍ରସ୍ତୁତି ପର୍ବ ଆରମ୍ଭ ହେଲା । ଲୋକନାଥଙ୍କ ମନରେ ଅପୂର୍ବ କୌତୂହଳ । ଧନୀଲୋକଙ୍କ ବରାଦ ମତେ, ଦୁଇଗୁଣ ମୂଲ୍ୟ ଦେଇ ଥିବାରୁ, ତାଙ୍କ ପାରୁ ପର୍ଯ୍ୟନ୍ତେ ବିଭିନ୍ନ ପ୍ରକାର ସାମଗ୍ରୀ ଓ ମସଲା ଦେଇ ପୂର୍ବ ସୁଆରଙ୍କ ସହିତ ପ୍ରତିଦ୍ୱନ୍ଦିତା ମୂଳକ ମନୋଭାବ ନେଇ ସେ ପ୍ରସ୍ତୁତ କରିଛନ୍ତି ଗୋଟିଏ ବିଶେଷ ମହୁର କୁଡିଆ । ପୁଣି ଆଉ ଗୋଟିଏ ଜଣେ ଗରିବର । ଖାଲି ଯେତିକି ଚୂନା ସେତିକି ପିଠା ନ୍ୟାୟରେ ସେ ଅନ୍ୟ କୁଡିଆଟି ପ୍ରସ୍ତୁତ କରିନଥିଲେ ଶେଷକୁ ଯୋଗ ଏପରି ହେଲା ଯେ ତାହା ଶେଷ ଘରେ ରନ୍ଧାହୋଇ ନପାରି ମସଲା ମିଶା କଞ୍ଚା ପରିବା ହୋଇ ମୁଦାଏ ଗରମପାଣିସହ କାଳିଆ ଆଗରେ ବଢାହେବାକୁ ଗଲା ଗରମ କୁଡିଆ ସବୁ ଉପରେ ଧୂଆ ହେବାକୁ । ଉପରୁ କଟା ପରିବା କିଛି ବାହାର କସଗଲା । କେଉଁଟା କଣ ହୋଇଛି ଦେଖାଯାଉ !

ପ୍ରଥମେ ସେ ଅଗ୍ରହାନ୍ୱିତ ହୋଇ ପରଖ କଲେ ଗରିବର ସେ କୁଡିଆଟିକୁ । କାଳେ ସିଝି ନଥିବ ? ନ ସିଝିବା ତ ଦୂରର କଥା, ସେ ଯେତେବେଳେ ଘାଣ୍ଟିବାକୁ ହାଙ୍କି ମାରିଦିଅନ୍ତି, ସେ ବିସ୍ମିତ ହୋଇପଡିଲେ । ସୁଆର ହିସାବରେ ଅନେକ ରାନ୍ଧିଛନ୍ତି । କିନ୍ତୁ ଏପରି ମହକ........

ଗରିବଟିର ଜଗନ୍ନାଥଙ୍କ ପ୍ରତି ଭକ୍ତି ସ୍ମରଣକରି, ସେ ଭାବ ଗଦ୍‌ଗଦ୍ ହୋଇ କୁଡିଆଟିରୁ ଟିକିଏ ମହୁର ପାଟିରେ ପକାଇ ଦେଲେ । ଏହା ତାଙ୍କ ପାଇଁ ଏକ ଅସ୍ୱାଭାବିକ କାର୍ଯ୍ୟଥିଲେ ହେଁ, ସେ ଦିନ ପାଇଁ ଅତ୍ୟନ୍ତ ସ୍ୱାଭାବିକ । ସେହି ମହୁରର ସ୍ୱାଦରେ ସେ ଅଭିଭୂତ ହୋଇ ଉଠିଲେ । ସଙ୍ଗେ ସଙ୍ଗେ ପାଖରେ ଧୂଆ ହୋଇଥିବା, ଅତିଯତ୍ନରେ ରନ୍ଧା ହୋଇଥିବା ଅନ୍ୟ ବ୍ୟକ୍ତିଙ୍କ କୁଡିଆ ଉପରେ ତାଙ୍କର ନଜର ପଡିଲା । ସେ ହାଙ୍କି ଉର୍ତ୍ତିକଲେ ତାକୁ ଘାଣ୍ଟିବା ପାଇଁ । ତାଙ୍କ ପ୍ରତିଯୋଗୀ ମନ ତାଙ୍କୁ ସେଥିରୁ ମଧ୍ୟ ଟିକିଏ ଚାଖିଦେବାକୁ ବାଧ୍ୟ କଲା । କିନ୍ତୁ ହାୟଃ ହାୟଃ, କଞ୍ଚାପରିବା ଓ ଯଥେଷ୍ଟ ସାମଗ୍ରୀ ନଥିବା ମହୁର କୁଡିଆର ସ୍ୱାଦ ତୁଳନାରେ ଏ ମହୁର କୁଡିଆର କି ସ୍ୱାଦ ? ଆକାଶ ପାତାଳ ପାର୍ଥକ୍ୟ ।

ସୁଆରଙ୍କ ଆଖି ଛଳ ଛଳ ହୋଇ ଆସିଲା । ହେ କାଳିଆ ! କିଏ କଳିବ ତୋର ମହିମା....? ତୁ ଭାବର ଅଧୀନ....ପ୍ରକୃତରେ ଭାବଗ୍ରାହୀ....ବିଭବ ଓ ଅହଂକାରର ବହୁତ ଦୂରରେ....ଭଗବାନ ସର୍ବଦା ଥାଆନ୍ତି ଭାବ ଆଉ ଭକ୍ତିରେ, ବୈକୁଣ୍ଠରେ ନୁହେଁ । ଭକ୍ତର ହୃଦୟରେ ।

ଦଣ୍ଡିରା ରୋଡ୍, ପୁରୀ ।

# ଚତୁର୍ଦ୍ଧା ମୂର୍ତ୍ତିଙ୍କର ଶ୍ରୀଗୁଣ୍ଡିଚା ଯାତ୍ରା

ଅଧ୍ୟାପକ ଶ୍ରୀ ଗୋପାଳଚନ୍ଦ୍ର ତ୍ରିପାଠୀ

ଶ୍ରୀଜୀଉଙ୍କର ଦ୍ୱାଦଶ ଯାତ୍ରା ମଧ୍ୟରୁ ଗୁଣ୍ଡିଚା ଯାତ୍ରା ସର୍ବପ୍ରସିଦ୍ଧ । ଆଷାଢ଼ମାସ ଶୁକ୍ଳପକ୍ଷ ଦ୍ୱିତୀୟା ତିଥିରେ ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନ ରଥାରୂଢ଼ ହୋଇ ଗୁଣ୍ଡିଚା ମନ୍ଦିରକୁ ଯାତ୍ରା କରିଥାନ୍ତି । ଦ୍ୱିତୀୟା ତିଥିଠାରୁ ଦଶମୀ ତିଥି ପର୍ଯ୍ୟନ୍ତ ଏହି ଯାତ୍ରା ଅନୁଷ୍ଠିତ ହେଉଥିବାରୁ ଏହା ନବଦିବସାତ୍ମକ ଯାତ୍ରା ବୋଲି ବିଦିତ । ରଥଯାତ୍ରାର ବାହ୍ୟ ରୂପ ବ୍ୟତୀତ ଏହାର ତାତ୍ତ୍ୱିକ ଦୃଷ୍ଟିକୋଣକୁ ଅନୁଧ୍ୟାନ କରିବା କଥା । କଠୋପନିଷଦରେ କୁହାଯାଇଛି ,

"ଆତ୍ମାନଂ ରଥିନଂ ବିଦ୍ଧି ଶରୀରଂ ରଥମେବତୁ ।
ବୁଦ୍ଧିଂ ତୁ ସାରଥିଂ ବିଦ୍ଧି ମନଃ ପ୍ରଗହମେବ ଚ ॥
ଇନ୍ଦ୍ରିୟାଣି ହୟାନାହୁଃ ବିଷୟାଂସ୍ତେଷୁ ଗୋଚରନ୍ ।"

ଅର୍ଥାତ୍, ଆତ୍ମା ହେଉଛି ରଥୀ ବା ରଥାରୋହଣକାରୀ ଏବଂ ଶରୀର ଉକ୍ତ ରଥୀର ରଥ ଅଟେ । ମନ ଏହାର ଲଗାମ ଏବଂ ଇନ୍ଦ୍ରିୟମାନେ ଘୋଡ଼ା ଅଟନ୍ତି । ଶବ୍ଦ, ସ୍ପର୍ଶ, ରୂପ, ରସ ଓ ଗନ୍ଧ, ଏହି ପଞ୍ଚ ଇନ୍ଦ୍ରିୟର ବିଷୟ, ରଥର ଗତିପଥ ଅଟନ୍ତି । ଏହି ପାଞ୍ଚଗୋଟି ବିଷୟକୁ ଗ୍ରହଣ କରିବା ପାଇଁ କର୍ଣ୍ଣ, ଚର୍ମ, ଚକ୍ଷୁ, ଜିହ୍ୱା ଓ ନାସିକା ଆଦି ପଞ୍ଚେନ୍ଦ୍ରିୟ କାର୍ଯ୍ୟରତ ରହିଥାନ୍ତି । ଅତଏବ, ରଥରଥୀ କଳ୍ପନାର ନିଦର୍ଶନ ସ୍ୱରୂପ ଶ୍ରୀଗୁଣ୍ଡିଚା ଯାତ୍ରା ଅନୁଷ୍ଠିତ ହୋଇଥାଏ ।

ଚତୁର୍ଦ୍ଧାମୂର୍ତ୍ତି ଏକ ତଥା ଅଭିନ୍ନ । ଶ୍ରୀଜଗନ୍ନାଥ ଚରିତାମୃତ ଗ୍ରନ୍ଥରେ 'ଜଗନ୍ନାଥ' ଚତୁରକ୍ଷରକୁ ଚତୁର୍ଦ୍ଧାମୂର୍ତ୍ତି ତତ୍ତ୍ୱର ମୂଳବୀଜ ରୂପରେ ଧରାଯାଇଛି । ଯଥା :— " 'ଜ' କାରଶ୍ଚ ଜଗନ୍ନାଥଃ 'ଗ' କାରଃ ବଳଦେବକଃ ।
ଭଦ୍ରା 'ନ' କାର ଭବେନ 'ଥ' କାରଶ୍ଚ ସୁଦର୍ଶନଃ ॥"

ଶ୍ରୀ ଜଗନ୍ନାଥ ଦାସ 'ଏକାକ୍ଷର ପ୍ରଶ୍ନ'ରେ ମଧ୍ୟ ଅନୁରୂପ ମତ ପ୍ରଦାନ କରିଛନ୍ତି ।

ଯଥା :— "ଯେଉଁ ପ୍ରଭୁ ଜଗନ୍ନାଥ ତହିଁ ସିନା ସବୁତତ୍ତ୍ୱ
ଶୁକଳ ଗଉର ରଙ୍ଗ କଳା ବୋଲିଟି ।
ଏମନ୍ତେ ଚାରି ହୋଇଲା ଅପରେ ଚାରି କହିଲା
ଶ୍ରୀନୀଳକନ୍ଦରେ ବିଜେ ଚତୁର୍ଦ୍ଧାମୂର୍ତ୍ତି ।"

ଚତୁର୍ଦ୍ଧାମୂର୍ତ୍ତି ଅତୀବ ରହସ୍ୟମୟ । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ଓ ସୁଦର୍ଶନ ଯଥାକ୍ରମେ କୃଷ୍ଣ, ଶ୍ୱେତ, ପୀତ ଓ ଲୋହିତବର୍ଣ୍ଣ ବିଶିଷ୍ଟ । ଏମାନେ ପୃଥିବୀର ଚାରିବର୍ଣ୍ଣର ମନୁଷ୍ୟ ଭିତରେ ସାମ୍ୟ ଓ ମୈତ୍ରୀ ପ୍ରତିଷ୍ଠା କରିବା ପାଇଁ ଗୋଟେ ସାଙ୍କେତିକ ରୂପ ମାତ୍ର । ଆଫ୍ରିକା ଓ ଏସିଆର କୃଷ୍ଣାଙ୍ଗ, ୟୁରୋପ ଓ ଆମେରିକାର ଶ୍ୱେତାଙ୍ଗ, ଚୀନ ଓ ତିବ୍ବତର ପୀତାଙ୍ଗ ଏବଂ ଲୋହିତ ଭାରତୀୟ ଜାତିର ଲୋହିତାଙ୍ଗ ମାନଙ୍କ ମଧ୍ୟରେ ମିଳନର ଅଭିମନ୍ତ୍ର ଶୁଣାଇବା ପାଇଁ ଚତୁର୍ଦ୍ଧାମୂର୍ତ୍ତି ଅବତୀର୍ଣ୍ଣ । ଆଫ୍ରିକା ଓ ଏସିଆର ଅଧିବାସୀ ଅପେକ୍ଷାକୃତ ଦରିଦ୍ର ହୋଇଥିବାରୁ, ମହାପ୍ରଭୁ ଶ୍ରୀଜଗନ୍ନାଥ ସେମାନଙ୍କ ପ୍ରତିନିଧିତ୍ୱ କରିବା ଉଦ୍ଦେଶ୍ୟରେ ବୋଧହୁଏ କୃଷ୍ଣବର୍ଣ୍ଣ । ସେ ହେଉଛନ୍ତି ପତିତପାବନ, ଦୀନବନ୍ଧୁ ।

କାଳଚକ୍ରର ଚାରି ଅବସ୍ଥା ହିଁ ଚତୁର୍ଦ୍ଧାମୂର୍ତ୍ତି । କୃଷ୍ଣବର୍ଣ୍ଣର ଜଗନ୍ନାଥ ହେଉଛନ୍ତି ରାତ୍ରୀ, ଶୁକ୍ଳ ବର୍ଣ୍ଣର ବଳଭଦ୍ର ହେଉଛନ୍ତି ଦିବସ, ହରିଦ୍ରାବର୍ଣ୍ଣର ସୁଭଦ୍ରା ହେଉଛନ୍ତି ସନ୍ଧ୍ୟା ଏବଂ ସୁଦର୍ଶନ ହେଉଛନ୍ତି କାଳବର୍ଣ୍ଣର ପ୍ରତୀକ । କେତେକ ପଣ୍ଡିତ ଜଗନ୍ନାଥଙ୍କୁ ବିଷ୍ଣୁଙ୍କର କାଳସ୍ୱରୂପ, ସୁଭଦ୍ରାଙ୍କୁ ବିଷ୍ଣୁଙ୍କର ପ୍ରକୃତି ସ୍ୱରୂପ ଓ ବଳଭଦ୍ରଙ୍କୁ ବିଷ୍ଣୁଙ୍କର ପୁରୁଷ ସ୍ୱରୂପ ଭାବରେ କଳ୍ପନା କରିଥାନ୍ତି ।

ସେହିପରି ଶ୍ରୀ ବଳରାମ ଦାସ, ଗୁପ୍ତ ଗୀତାରେ ଚତୁର୍ଦ୍ଧାମୂର୍ତ୍ତିଙ୍କୁ ଚାରିବେଦ ବୋଲି ମତ ପ୍ରଦାନ କରିଛନ୍ତି । ବଳଭଦ୍ର ହେଉଛନ୍ତି ସାମବେଦ, ସୁଭଦ୍ରା ଋକ୍‌ବେଦ, ଜଗନ୍ନାଥ ଯଜୁର୍ବେଦ ଏବଂ ସୁଦର୍ଶନ ହେଉଛନ୍ତି ଅଥର୍ବବେଦ । ଗୁପ୍ତଗୀତା ଅନୁଯାୟୀ ,

"ବଳଭଦ୍ର ଯେ ସାମ ହୋଇ, ଋକ୍ ଯେ ସୁଭଦ୍ରା ଅଟଇ ।
ଯଜୁର୍ବେଦ ଶ୍ରୀଜଗନ୍ନାଥ, ଅଥର୍ବ ସୁଦର୍ଶନ ପାର୍ଥ ।"

ଏତଦ୍‌ବ୍ୟତୀତ, ଶ୍ରୀବଳଭଦ୍ର, ସୁଭଦ୍ରା, ଜଗନ୍ନାଥ, ଏ ତ୍ରିମୂର୍ତ୍ତି ହେଉଛନ୍ତି ଜ୍ଞାନଯୋଗ, କର୍ମଯୋଗ ଓ ଭକ୍ତିଯୋଗର ପ୍ରତୀକ । ବଳଭଦ୍ର ହେଉଛନ୍ତି ଜ୍ଞାନଯୋଗୀ, ସୁଭଦ୍ରା କର୍ମଯୋଗୀ ଓ ଜଗନ୍ନାଥ ଭକ୍ତିଯୋଗୀ । ବା ପ୍ରେମଯୋଗୀ ଶ୍ରୀମଦ୍‌ ଭଗବତ୍‌ ଗୀତା ଅନୁଯାୟୀ, କେବଳ କର୍ମ, କେବଳ ଜ୍ଞାନ ଓ କେବଳ ଭକ୍ତିର ମୂଲ୍ୟନାହିଁ । କର୍ମୀର ହାତ, ଜ୍ଞାନୀର ଚକ୍ଷୁ ଓ ଭକ୍ତର ହୃଦୟ, ଏହି ତିନିଗୋଟିର ସମନ୍ୱୟରେ ମାନବ ଜୀବନ ସାର୍ଥକ ହୁଏ ।

ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଓ ସୁଦର୍ଶନ ଚକ୍ର ହିଁ ଚତୁର୍ଦ୍ଧାମୂର୍ତ୍ତି । ସାରଳା ଦାସଙ୍କ ଭାଷାରେ ।

"ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା ।
ଶ୍ରୀପୁରୁଷୋତ୍ତମେ ବିଜେ ହରୀ, ହରି, ବ୍ରହ୍ମା ।।"

ଅର୍ଥାତ୍‌, ବଳଭଦ୍ର ହେଉଛନ୍ତି ଦେବଦେବ ମହାଦେବ, ଜଗନ୍ନାଥ ସ୍ୱୟଂବିଷ୍ଣୁ ଓ ସୁଭଦ୍ରା ହେଉଛନ୍ତି ସ୍ୱୟଂ ସୃଷ୍ଟି କର୍ତ୍ତା ବ୍ରହ୍ମା । ବ୍ରହ୍ମା ଅଭିଶାପ ଫଳରେ ସ୍ତ୍ରୀ ରୂପ ଧାରଣ କରିଛନ୍ତି ବୋଲି ତାଙ୍କ ଲେଖାରୁ ପ୍ରମାଣ ମିଳେ ।

ପଣ୍ଡିତ ସୂର୍ଯ୍ୟ ନାରାୟଣ ଦାସଙ୍କ ଲିଖିତ 'ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ'ରେ ଉଲ୍ଲେଖ ଅଛି ଯେ ପଞ୍ଚଦେବତା ଉପାସନାର ସମନ୍ୱୟ ଶ୍ରୀମନ୍ଦିରରେ ପ୍ରକାଶ ପାଉଥିବା ସର୍ବତ୍ର ବିଦିତ । ନାରାୟଣ ରୂପରେ ଜଗନ୍ନାଥ, ଗଣପତି ରୂପରେ ଜଗନ୍ନାଥ, ଶିବ ରୂପରେ ବଳଭଦ୍ର, ଅମ୍ବିକା ରୂପରେ ସୁଭଦ୍ରା ଏବଂ ଭାସ୍କର ରୂପରେ ସୁଦର୍ଶନ, ଏପରି ପଞ୍ଚଦେବତା ଜଗନ୍ନାଥ ମନ୍ଦିରର ସିଂହାସନ ଉପରେ ବିରାଜିତ ।

ଚତୁର୍ଦ୍ଧାମୂର୍ତ୍ତିଙ୍କ ନିମିତ୍ତ ପ୍ରତିବର୍ଷ ତିନୋଟି ନୂତନ ରଥ ନିର୍ମିତ ହୋଇଥାଏ । ଶ୍ରୀସୁଦର୍ଶନ ସୁଭଦ୍ରାଙ୍କ ରଥରେ ରଥାରୂଢ଼ ହୁଅନ୍ତି । ଶ୍ରୀବଳଭଦ୍ରଙ୍କ ରଥର ନାମ ତାଳଧ୍ୱଜ । ଏହାର ଉଚ୍ଚତା ୩୨ ହାତ ୧୦ ଆଙ୍ଗୁଳି ; ଏହା ୧୪ ଚକ ବିଶିଷ୍ଟ । ଏହାର ରକ୍ଷକ ହେଉଛନ୍ତି ସ୍ୱୟଂ ବାସୁଦେବ । ରଥର ଆବରଣ ରକ୍ତନୀଳ ଏବଂ ରଥର ଶୀରରେ ଅନନ୍ତ ନାଗ ବିଦ୍ୟମାନ । ରଥର ପାର୍ଶ୍ୱ ଦେବତା ମାନେ ହେଲେ ପ୍ରଣମ୍ୟାରୀ, ଗଣ୍ଡାନ୍ତକାରୀ, ହରିହର, ତ୍ରେମ୍ବକ,

ବାସୁଦେବ, ନାତାମ୍ବର, ଅଘୋର ଏବଂ ତ୍ରିପୁରାରୀ ଶିବ । ମାତଳୀ ଉକ୍ତ ରଥର ସାରଥୀ । ଏହାର ଅଶ୍ୱମାନଙ୍କ ନାମ ହେଲା ତୀବ୍ର, ଘୋର, ଦୀର୍ଘ ଏବଂ ଶ୍ରମ ଓ ସ୍ୱର୍ଣ୍ଣନାଭ । ସ୍ୱୟଂ ବାସୁକୀ ଏହାର ରଜ୍ଜୁ ରୂପରେ ବିରାଜିତ । ଏହାର ଚର ଦେବତା ହେଉଛନ୍ତି ବ୍ରହ୍ମା ଓ ଶିବ । ଋଷିପଟାରେ ଅଙ୍ଗିରା, ପୌଲସ୍ତ୍ୟ, ପୁଲହ, ଅଗସ୍ତି, କୃଷ୍ଣ, ମୁଦ୍‌ଗଲ, ଆତ୍ରେୟ ଓ କଶ୍ୟପାଦି ଅଷ୍ଟଋଷି ବିରାଜମାନ । ଉକ୍ତ ରଥର ଦ୍ୱାରପାଳ ହେଲେ ନନ୍ଦ ଓ ସୁନନ୍ଦ ଏବଂ ରଥର ନେତର ନାମ ଉନ୍ନାନି । ତାଳଧ୍ୱଜ ରଥର ଅଧିଶ୍ୱର ହେଉଛନ୍ତି ଶ୍ରୀ ଶ୍ରୀ ବଳଭଦ୍ର ବା ବଡ଼ ଠାକୁର ।

ଶ୍ରୀସୁଭଦ୍ରାଙ୍କ ରଥ ଦେବଦଳନ ବା ଦର୍ପଦଳନ ନାମରେ ବିଦିତ । ଏହାର ଉଚ୍ଚତା ୩୧ ହାତ ଏବଂ ଏହା ୧୨ ଚକ ବିଶିଷ୍ଟ । ଏ ରଥର ରକ୍ଷକ ହେଉଛନ୍ତି ଜୟଦୁର୍ଗା । ଧ୍ୱଜାରେ ତ୍ରିପୁର ସୁନ୍ଦରୀ ବିରାଜମାନ । ରଥର ଆବରଣ କୃଷ୍ଣଲୋହିତ । ଏହାର ପାର୍ଶ୍ୱଦେବତା ମାନେ ହେଲେ ବିମଳା, ଚାମୁଣ୍ଡା, ଭଦ୍ରକାଳୀ, ହରଚଣ୍ଡୀ, ମଙ୍ଗଳା, ବାରାହୀ, କାତ୍ୟାୟିନୀ, ଜୟଦୁର୍ଗା ଓ କାଳୀ । ରଥର ସାରଥୀ ହେଉଛନ୍ତି ସ୍ୱୟଂ ଅର୍ଜୁନ । ଉଗ୍ରଚଣ୍ଡା ଏ ରଥକୁ ରକ୍ଷା କରନ୍ତି । ଚାରିଅଶ୍ୱର ନାମହେଲା ରୋଚିକା, ମୋଚିକା, ଜିତା ଓ ଅପରାଜିତା । ସ୍ୱର୍ଣ୍ଣଚୂଡ଼ ନାମକ ନାଗ ଏ ରଥର ରଜ୍ଜୁ ଅଟନ୍ତି । ଋଷି ପଟାରେ ଯୋଗୁ, ସୁପ୍ରଭ, ବଜ୍ର, ଶୃଙ୍ଗୀ, ଧ୍ରୁବ ଉଲ୍ଲୁକ ନାମକ ଷଷ୍ଠ ଋଷି ବିରାଜମାନ । ନେତର ନାମ ନାଦାମ୍ବିକା । ଦେବଦଳନ ରଥର ଅଧିଶ୍ୱରୀ ହେଲେ ଶ୍ରୀ ଶ୍ରୀ ସୁଭଦ୍ରା ।

ଶ୍ରୀ ଶ୍ରୀ ଜଗନ୍ନାଥଙ୍କ ରଥର ନାମ ନନ୍ଦିଘୋଷ । ଏହା ଇନ୍ଦ୍ରଙ୍କ ପ୍ରଦତ୍ତ । ଏହାର ଉଚ୍ଚତା ୩୩ ହାତ ୫ ଆଙ୍ଗୁଳି ଏବଂ ଏହା ୧୬ ଚକ ବିଶିଷ୍ଟ । ଏହାର ରକ୍ଷକ ହେଉଛନ୍ତି ସ୍ୱୟଂ ଗରୁଡ଼ । ଧ୍ୱଜାରେ ବୀର ହନୁମାନ ବିଜେ କରିଥାନ୍ତି । ରଥର ଆବରଣ ରକ୍ତପୀତ । ରଥର ଶକ୍ତି ହେଉଛନ୍ତି ବିମଳା । ରଥର ଚତୁଃପାର୍ଶ୍ୱରେ ନବଦେବତା ବିଦ୍ୟମାନ । ସେମାନେ ହେଲେ, ହନୁମାନ, ରାମ, ଲକ୍ଷ୍ମଣ, ନାରାୟଣ, କୃଷ୍ଣ, ଗୋବର୍ଦ୍ଧନ ଧାରଣ, ଚିନ୍ତାମଣି, ରାଘବ ଓ ନୃସିଂହ । ଚାରି ଅଶ୍ୱଙ୍କର ନାମ ହେଲା ଶଙ୍ଖ, ବଳାହକ, ଶ୍ୱେତ ଓ ହରିଦାଶ୍ୱ । ସାରଥୀଙ୍କ ନାମ ଦାରୁକ ଏବଂ ରଥର ରଜ୍ଜୁ ହେଲେ ଶଙ୍ଖଚୂଡ଼ ନାମ୍ନୀ ନାଗୁଣୀ । ରଥର ମୁଖ ହେଲେ ନନ୍ଦୀମୁଖ । ନନ୍ଦିଘୋଷର ଦେବୀ ହେଉଛନ୍ତି ଯୋଗମାୟା । ଋଷି ପଟାରେ ନାରଦ, ଦେବଳ, ବ୍ୟାସ, ଶୁକ, ପରାଶର, ବଶିଷ୍ଠ, ବିଶ୍ୱାମିତ୍ର ଓ ରୁଦ୍ର ଆଦି ଅଷ୍ଟଋଷି ବିଦ୍ୟମାନ । ରଥର ଦ୍ୱାରପାଳ ହେଲେ ଜୟ ବିଜୟ

ଏବଂ ନେତର ନାମ ତ୍ରୈଲୋକ୍ୟମୋହିନୀ । ନନ୍ଦିଘୋଷ ରଥର ଅଧୀଶ୍ବର ହେଉଛନ୍ତି ପରଂବ୍ରହ୍ମ ଶ୍ରୀ ଶ୍ରୀ ଜଗନ୍ନାଥ ।

ଶ୍ରୀ ଗୁଣ୍ଡିଚ୍ଚା ଯାତ୍ରା ଏକ ନବ ଦିବସାତ୍ମକ ଯାତ୍ରା । ଦଶମୀ ତିଥିରେ ବାହୁଡ଼ା ଯାତ୍ରା ଅନୁଷ୍ଠିତ ହୋଇଥାଏ । ଅତଏବ, ଗମନାଗମନର ଦିବସ ଦ୍ୱୟକୁ ବାଦ୍ ଦେଲେ ଶ୍ରୀ ଜୀଉ ଗୁଣ୍ଡିଚ୍ଚା ମନ୍ଦିରରେ ସାତଦିନ ମାତ୍ର ରହନ୍ତି । ଏହି ସାତ ଦିନ ମଧ୍ୟରେ ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କଲେ ଅଶେଷ ଫଳ ଲାଭହୁଏ ବୋଲି ଭକ୍ତ ସମାଜର ଗଭୀର ବିଶ୍ବାସ । ସେଥିପାଇଁ ବ୍ରହ୍ମ ପୁରାଣରେ କୁହାଯାଇଛି ,

"ଯେ ପଶ୍ୟନ୍ତି ତଦାକୃଷ୍ଣଂ ସପ୍ତାହଂ ମଣ୍ଡପେସ୍ଥିତମ୍ ।
ହଳିନଞ୍ଚ ସୁଭଦ୍ରାଞ୍ଚ ବିଷ୍ଣୁଲୋକଂ ବ୍ରଜନ୍ତି ତେ ।।"



ଜୟ ଜଗନ୍ନାଥ

# ତନ୍ତ୍ରତତ୍ତ୍ୱରେ ଶ୍ରୀଜଗନ୍ନାଥ

ଯୋଗାଚାର୍ଯ୍ୟ ପଣ୍ଡିତ ରମାକାନ୍ତ କର

ଭାରତୀୟ ସଂସ୍କୃତି ହିଁ ହିନ୍ଦୁ ସଂସ୍କୃତି ଓ ହିନ୍ଦୁ ସଂସ୍କୃତିର ପ୍ରଧାନ ଧର୍ମଗ୍ରନ୍ଥ ହିଁ ଶ୍ରୁତି ବା ବେଦ ଯାହାକି ଦେବମୁଖନିସୃତ ବୋଲି ଶାସ୍ତ୍ରମାନଙ୍କରେ ପ୍ରମାଣିତ । ତନ୍ତ୍ରର ଉଦ୍ଭବ ବେଦକାଳର ବହୁପୂର୍ବରୁ ବୋଲି ମଧ୍ୟ ପ୍ରମାଣ ମିଳେ । 'ତନତର' ଶବ୍ଦରୁ ସାଧୁଶବ୍ଦ 'ତନ୍ତ୍ର'ର ସୃଷ୍ଟି । 'ତ'-ପୁଣ୍ୟ, 'ନ'-ଅବ୍ୟୟ, 'ତ'-ଅମୃତ ଓ 'ର' ବର୍ଣ୍ଣ । ତନ୍ତ୍ରର ମୋଟାମୋଟି ଅର୍ଥ ହେଉଛି, ପୁଣ୍ୟ ସଂସାରର ଅମୃତ ବର୍ଣ୍ଣ ସମ୍ବନ୍ଧ ଓ ସେହି ତନ୍ତ୍ର ସମ୍ବନ୍ଧୀୟ ତତ୍ତ୍ୱହିଁ ତନ୍ତ୍ରତତ୍ତ୍ୱ । ତନ୍ତ୍ର କ'ଣ ? "ତନ୍ୟତେ ବିସ୍ତାର୍ଯତେ ଜ୍ଞାନମନେନେତି ତନ୍ତ୍ରମ୍ ।" ଅର୍ଥାତ୍ ବିଦ୍ୟା-ଅବିଦ୍ୟା, ପୁରୁଷ-ପ୍ରକୃତି, ଭୈରବ ଭୈରବୀ, ଶିବ-ଶକ୍ତି ଇତ୍ୟାଦି ସମ୍ବନ୍ଧରେ ଭେଦାଭେଦ ଜ୍ଞାନ ପ୍ରଦାନ ପୂର୍ବକ ତତ୍ ସମ୍ବନ୍ଧୀୟ ଜ୍ଞାନକୁ ବିସ୍ତାର କରି ମୁକ୍ତି ପ୍ରଦାନ କରିବା ଶାସ୍ତ୍ରକୁ ହିଁ ତନ୍ତ୍ରଶାସ୍ତ୍ର କୁହାଯାଏ । ବୈଦିକ ଯୁଗର ପୂର୍ବରୁ ତନ୍ତ୍ରର ସ୍ଥିତି ସମ୍ବନ୍ଧୀୟ ପ୍ରମାଣ ମଧ୍ୟ ଅନେକ ପାଶ୍ଚାତ୍ୟ ତନ୍ତ୍ର ଗବେଷକ ପ୍ରଦାନ କରିଛନ୍ତି । ଯଥା—

Tantra is a science by which one's knowledge expends or leads to liberation. That Tantra is as old as the Vedas. ଅନ୍ୟଜଣେ ଇଂରେଜୀ ଗବେଷକଙ୍କ ମତରେ— Tantra yoga is a dynamic Sadhana based on Agama which means near approach. The word Tantra is derived from the root 'TAN' (to spread out) That is the spreading out of the cosmic energy through out the being. It is synthetic in its aspect. It seeks to unite the Prakriti & Purush, Shakti & Shiva and Bhairaba & Bhairabi etc.

ତନ୍ତ୍ର-ବିଜ୍ଞାନ ଦ୍ୱାରା ମାନବର ଜ୍ଞାନ ପରିତ୍ରାଣ ଆଡକୁ ଟାଣିକରେ । କାମିକାଗମଶାସ୍ତ୍ରରେ ମଧ୍ୟ ଠିକ୍ ଏହି ଉକ୍ତି ହିଁ ପରିଦୃଷ୍ଟ ହୁଏ । ଯଥା— "ତନୋତି ବିପୁଳାନ୍ ଅର୍ଥାତ୍ ତତ୍ତ୍ୱ ମନ୍ତ୍ରସମନ୍ୱିତାନ୍ । ତ୍ରାଣଂ କୁରୁତେ ଯସ୍ମାତ୍ ତନ୍ତ୍ରମିତ୍ୟଭିଧୀୟତେ ।" ପରମାତ୍ମା ପରମପୁରୁଷ ଆଦିପୁରୁଷଙ୍କର ପ୍ରଣୀତ ବିଧାନ ହିଁ ତନ୍ତ୍ର । କଳିଯୁଗରେ ତନ୍ତ୍ର ବା ଆଗମର ପ୍ରୟୋଗ ବହୁଳ ଭାବରେ ଦେଖାଯାଏ । ଏହାର ପ୍ରମାଣ ମହାନିର୍ବାଣ ତନ୍ତ୍ରରେ କୁହାଯାଇଛି—"କୃତେ ଶ୍ରୁତ୍ୟୁକ୍ତମାର୍ଗଃ ସ୍ୟାତ୍ ତ୍ରେତାୟାଂ ସ୍ମୃତିସମ୍ଭବଃ । ଦ୍ୱାପରେ ତୁ ପୁରାଣୋକ୍ତିଃ କଳୌ ଆଗମ ସମ୍ମତ ।" ଅର୍ଥାତ୍ ସତ୍ୟଯୁଗରେ ବେଦାନୁସାରେ, ତ୍ରେତୟାରେ ସ୍ମୃତି ଅନୁସାରେ, ଦ୍ୱାପରରେ ପୁରାଣାନୁସାରେ ଓ କଳିଯୁଗରେ ତନ୍ତ୍ରୋକ୍ତ ବିଧି ଅନୁସାରେ କ୍ରିୟା ସମ୍ପାଦିତ ହୁଏ । କଳିଯୁଗରେ ବୁଦ୍ଧାବତାର ହିଁ ସାକ୍ଷାତ୍ ଜଗନ୍ନାଥ ବୋଲି ମଧ୍ୟ 'ଗୀତଗୋବିନ୍ଦ'ରେ ଉଲ୍ଲେଖ କରାଯାଇଛି । ବୌଦ୍ଧତନ୍ତ୍ରରେ ଅନେକ ସ୍ଥଳରେ ମଧ୍ୟ "ନମୋ ଜଗନ୍ନାଥ ବୁଦ୍ଧାୟ" ପ୍ରଭୃତିର ପ୍ରୟୋଗ ପରିଦୃଷ୍ଟହୁଏ । ଏଣୁ କଳିଯୁଗରେ ତନ୍ତ୍ର ଓ ଶ୍ରୀଜଗନ୍ନାଥ ଉଭୟଙ୍କର ସମ୍ପର୍କ ଘନିଷ୍ଠ । ବୈଷ୍ଣବ ତନ୍ତ୍ରରେ ଯେପରି ଦଶାବତାର ବର୍ଣ୍ଣନ ବୈଷ୍ଣବାଗମ ପ୍ରଭୃତି ଶାସ୍ତ୍ରରେ ଦେଖାଯାଏ, ସେହିପରି ଶାକ୍ତତନ୍ତ୍ରରେ ଦଶମହାବିଦ୍ୟାଙ୍କର ବର୍ଣ୍ଣନା ନିତ୍ୟତନ୍ତ୍ରଶାସ୍ତ୍ରରେ ଦେଖିବାକୁ ମିଳେ । ଯଥା—

"କୃଷ୍ଣସ୍ତୁ କାଳିକାଦେବୀ ଶ୍ରୀରାମସ୍ତାରିଣୀ ତଥା ।
ଭାର୍ଗବଃ ଷୋଡ଼ଶୀ ବିଦ୍ୟା ବାମନୋ ଭୁବନେଶ୍ୱରୀ ।
ମତ୍ସ୍ୟସ୍ତୁ ବଗଳାଦେବୀ ବରାହୋଛିନ୍ନମସ୍ତିକା ।
ଧୂମାବତୀ କୂର୍ମରୂପା ନୃସିଂହୋ ଭୈରବୀସ୍ୱୟମ୍ ।
ବୁଦ୍ଧରୂପା ମହାଲକ୍ଷ୍ମୀ ମାତଙ୍ଗୀ କଲ୍କିରୂପିଣୀ
ଏତା ଦଶମହାବିଦ୍ୟା ଅବତାର ହରେର୍ଦ୍ଦଶଃ ।"

ବୁଦ୍ଧାବତାର ଜଗନ୍ନାଥଙ୍କର ମହାଲକ୍ଷ୍ମୀଙ୍କ ସହିତ ସମ୍ବନ୍ଧ ପ୍ରମାଣିତ । ନୃସିଂହ ଏଠାରେ ହେଉଛନ୍ତି ସ୍ୱୟଂ ବିଷ୍ଣୁ ଏବଂ ସେହିପରି ଜଗନ୍ନାଥ ମଧ୍ୟ ଭୈରବ ଅଟନ୍ତି । ଏଣୁ ତନ୍ତ୍ରବିଧି ଅନୁସାରେ କାର୍ତ୍ତିକମାସ ଶୁକ୍ଳଚତୁର୍ଦ୍ଦଶୀ ଶୁଭତିଥିରେ ଶ୍ରୀମନ୍ଦିରରେ ଜଗନ୍ନାଥଙ୍କର ନୃସିଂହ ବେଶ ଅନୁଷ୍ଠିତ ହୁଏ । "ମହାପୀଠ ନିରୂପଣମ" ନାମକ ତନ୍ତ୍ରଶାସ୍ତ୍ରରେ ଓ ଦେବୀ ଭାଗବତରେ ମଧ୍ୟ ବର୍ଣ୍ଣିତ ହୋଇଅଛି ।

"ଉତ୍କଳେ ନାଭିଦେଶସ୍ତୁ ବିରଜା କ୍ଷେତ୍ରମୁଚ୍ୟତେ ।
ବିମଳା ସା ମହାଦେବୀ ଜଗନ୍ନାଥସ୍ତୁ ଭୈରବଃ ।"

ଉତ୍ତୀଶତନ୍ତ୍ରରେ ମଧ୍ୟ ଉକ୍ତବାଣୀ ସ୍ୱୀକୃତ ହୋଇ । ଯଥା—

"ଉତ୍କଳେ ନାଭିଦେଶଷ୍ଟ ବିମଳା ପୁରୁଷୋତ୍ତମେ ।
ବିମଳା ଭୈରବୀ ତତ୍ର ଜଗନ୍ନାଥଷ୍ଟ ଭୈରବଃ ।"

ଉକ୍ତ ଉକ୍ତିରୁ ଜଗନ୍ନାଥ ସ୍ୱୟଂ ଭୈରବ ଓ ବିମଳା ଭୈରବୀ ଭାବରେ ଅର୍ଚ୍ଚିତା । ଶ୍ରୀମନ୍ଦିରରେ ଥିବା ତ୍ରିମୂର୍ତ୍ତିଙ୍କୁ ବିଭିନ୍ନ ଶାସ୍ତ୍ରରେ ବିଭିନ୍ନ ରୂପ ପ୍ରଦତ୍ତ ହୋଇଛି । କେଉଁଠାରେ ସେ ହେଉଛନ୍ତି ସତ୍ତ୍ୱ, ରଜ, ତମ ଗୁଣାଧିକାରୀ, ଆଉ କେଉଁଠାରେ ସ୍ୱର୍ଗ, ମର୍ତ୍ତ୍ୟ, ପାତାଳ, କେଉଁଠାରେ ତ୍ରୈଲୋକନାଥ ପ୍ରଣବ ଓ ମନ୍ତ୍ରସିଦ୍ଧ, କେଉଁଠାରେ ବ୍ରହ୍ମା, ବିଷ୍ଣୁ, ଶିବ ଓ ଆଉ କେଉଁଠାରେ ତାରା, ଭୁବନେଶ୍ୱରୀ ଓ ଦକ୍ଷିଣକାଳୀ । ଏହିପରି ବିଭିନ୍ନ ମତରେ ଭିନ୍ନ ଭିନ୍ନ ଭାବରେ କଳ୍ପିତ । ଯାହା ହୁଅନ୍ତୁ ନା କାହିଁକି ଏହି ତିନିମୂର୍ତ୍ତି ହିଁ ପୁରୁଷ ଓ ପ୍ରକୃତି ସମନ୍ୱିତ ଓ ତନ୍ତ୍ରସମ୍ମତ । ଯଥା—

"ଯଜ୍ଞମୂର୍ତ୍ତିଃ ପରଂବ୍ରହ୍ମ ତ୍ରିଗୁଣାତ୍ମକ ବିଗ୍ରହ ।"

ଶୂଦ୍ରମୁନି ସାରଳାଦାସ ମହାଭାରତରେ ବର୍ଣ୍ଣନା କରିଛନ୍ତି—

"ରାମକୃଷ୍ଣ ସୁଭଦ୍ରା ଯେ ଏ ତିନି ପ୍ରତିମା ।
ଶ୍ରୀପୁରୁଷୋତ୍ତମେ ବିଜେ ହଳୀ ହରି ବ୍ରହ୍ମା ।"

ମହାନିର୍ବାଣ ତନ୍ତ୍ରରେ—"ତାରା ସାକ୍ଷାତ୍ ଶୂଳପାଣିଃ ସୁଭଦ୍ରା ଭୁବନେଶ୍ୱରୀ ।
ନୀଳାଦ୍ରୌ ତୁ ଜଗନ୍ନାଥଃ ସାକ୍ଷାତ୍ ଦକ୍ଷିଣକାଳୀକା ।"

ଏଣୁ ଏଥିରୁ ସ୍ପଷ୍ଟ ପ୍ରମାଣିତ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ଏହି ତ୍ରିମୂର୍ତ୍ତି ପ୍ରକୃତି ଓ ପୁରୁଷ ଉଭୟଙ୍କର ସମନ୍ୱୟ ସୃଷ୍ଟି କରୁଛି ଓ ପ୍ରକୃତି ପୁରୁଷ ଜ୍ଞାନ ପ୍ରଦାନ କରୁଥିବାରୁ ତନ୍ତ୍ରସିଦ୍ଧଦେବତା ବୋଲି କୁହାଯାଇପାରେ । ତାଙ୍କର ଆୟୁଧ ସୁଦର୍ଶନଙ୍କୁ ମିଶାଇ ଚରିମୂର୍ତ୍ତିଙ୍କୁ ମଧ୍ୟ ବିଭିନ୍ନ ଶାସ୍ତ୍ରରେ ଚତୁର୍ଦ୍ଧାମୂର୍ତ୍ତି ବୋଲି ବର୍ଣ୍ଣନା କରାଯାଇଛି । ଏଣୁ 'ଜଗନ୍ନାଥ' ଶବ୍ଦରୁ ଏହି ଚରିମୂର୍ତ୍ତିଙ୍କର ସୂଚନା ମିଳୁଥିବାରୁ ଶ୍ରୀମନ୍ଦିରର ଅନ୍ୟନାମ କେବଳ ଜଗନ୍ନାଥଙ୍କ ନାମରେ ନାମିତ ହୋଇଛି । ଯଥା—

"ଜକ୍କାରସ୍ତୁ ଜଗନ୍ନାଥଃ ବଳଭଦ୍ରୋ ଗକାରକଃ ।
ଭଦ୍ରା ନାକାରରୂପା ଚ ଥକାରୋଽପି ସୁଦର୍ଶନଃ ।"

ଏଣୁ ଏହି ଚତୁର୍ଦ୍ଧାମୂର୍ତ୍ତି ହିଁ କେବଳ ଜଗନ୍ନାଥ ମୂର୍ତ୍ତିରେ ହିଁ ସୀମିତ । ଏଣୁ ସମସ୍ତ ଭକ୍ତଗଣ ଦର୍ଶନ କରିବା ଉପଲକ୍ଷେ ସିଂହଦ୍ୱାରଗୁମୁଟ ମଧ୍ୟରେ "ପତିତ—ପାବନ । ଖବରେ ଉପସ୍ଥାପିତ ହୋଇଛନ୍ତି । ପ୍ରସିଦ୍ଧ ବୌଦ୍ଧଶାସ୍ତ୍ର ବ୍ରଜତନ୍ତ୍ରରେ କୁହାଯାଇଛି—

"କାତ୍ୟାୟନୀଂ ଜଗନ୍ନାଥଂ ଉଡ୍ରେଶଂ ଚ ପ୍ରପୂଜୟେତ୍ ।"

ଏହି ତିନିମୂର୍ତ୍ତି ସମନ୍ୱିତ ଜଗନ୍ନାଥଙ୍କର ଠାରେ ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ତଥା ଭୁବନେଶ୍ୱରୀ, ଦକ୍ଷିଣକାଳୀ, ତାରଙ୍କର ରୂପ ଆରୋପ ହୋଇଥିବାରୁ ଆଦିପୁରୁଷ ଓ ଆଦିଶକ୍ତି ସମନ୍ୱିତ ଠାକୁର ବୋଲି ମଧ୍ୟ କୁହାଯାଇପାରେ ।

ତନ୍ତ୍ର ମତରେ ଜଗନ୍ନାଥପୀଠ ଶ୍ରୀଚକ୍ର ଉପରେ ସ୍ଥାପିତ ହୋଇଛି । କେତେକ ଶାକ୍ତ ଗବେଷକଙ୍କ ମତରେ—

"ଜଗନ୍ନାଥସ୍ୟ ସିଂହାସନଂ ଶୂନ୍ୟଗର୍ଭଂ ଏବଂ ଚ ତତ୍ର ତ୍ରିପୁରାଦେବ୍ୟାଃ ଯନ୍ତ୍ରଂ ଗୋପନୀୟବସ୍ଥାୟାଂ ବର୍ତ୍ତତେ" ଅର୍ଥାତ୍ ଜଗନ୍ନାଥଙ୍କର ସିଂହାସନ ଶୂନ୍ୟଗର୍ଭ ଓ ସେଠାରେ ତ୍ରିପୁରାଦେବୀଙ୍କର ଯନ୍ତ୍ର ଗୋପନୀୟ ହୋଇରହିଛି । ଜଗନ୍ନାଥଙ୍କର ଗୁଣ-କର୍ମ-ଉପାସନାଦି ସମ୍ବଳିତ ଯନ୍ତ୍ରକୁ ସଂଯୁକ୍ତ କରି ପଟଳ-କବଚ-ପଦ୍ଧତି ଆଦି କରାଯାଏ । ଏହା ହିଁ ଜଗନ୍ନାଥ ତନ୍ତ୍ର ।

ତାନ୍ତ୍ରିକାଚାର୍ଯ୍ୟମାନେ ମୂଳାଧାରଚକ୍ରକୁ ପ୍ରତ୍ୟକ୍ଷ ରୂପରେ ପୂଜା କରନ୍ତି । ଏଣୁ ସେମାନେ ହେଉଛନ୍ତି କୌଳିକ । ଜଗନ୍ନାଥଙ୍କର ମନ୍ଦିର ଚତୁର୍ପାର୍ଶ୍ୱରେ ପରିଦୃଷ୍ଟ ହେଉଥିବା ନଗ୍ନମୂର୍ତ୍ତି ଗୁଡିକ କୌଳପ୍ରଥାର ନିଦର୍ଶନ । ତନ୍ତ୍ରଶାସ୍ତ୍ରମାନଙ୍କରେ ପଞ୍ଚମକାର ଅର୍ଚ୍ଚନା ପ୍ରଧାନ । ମଦ୍ୟ-ମତ୍ସ୍ୟ-ମେଦ-ମହାଭର-ମୈଥୁନାଦି ପଞ୍ଚମକାର । ଜଗନ୍ନାଥ ମନ୍ଦିରରେ ଜଗନ୍ନାଥଙ୍କୁ ପଞ୍ଚମକାରର୍ଚ୍ଚନା କରାଯାଏ । ୧-ମଦ୍ୟ-ମନ୍ଦିରରେ ଲାଲଓଳିରେ ଘଷାପାଣି, ୨-ମତ୍ସ୍ୟ-ଲମ୍ବାକାନ୍ତି ବିରିପିଠା, ୩- ମେଦ-ପୁଳିଯୁକ୍ତ ବିରିପିଠା, ୪- ମହାଭର (ରୁଧିର)-ଟିନ୍ତୁଳିରସରେ ବଟା ଅଟା ବା ଅଦା, ୫- ମୈଥୁନ-ମନ୍ତ୍ର ଓ ନଗ୍ନମୂର୍ତ୍ତି । ଯଥା —

"ଜଗନ୍ନାଥପୀଠେ ଲୋହିତ ମୂର୍ତ୍ତିକାପାତ୍ରେ ଘଣ୍ଟାଜଳଂ ମଦ୍ୟମ୍, ଦୀର୍ଘକାନ୍ତିବିରିପିଷ୍ଟକଂ ମତ୍ସ୍ୟଃ, ପୁଳିଯୁକ୍ତଂ ବିରିପିଷ୍ଟକଂ ମେଦଃ, ତିନ୍ତୁଡ଼ିରସେନ-ମୂର୍ଚ୍ଛିତଂ ରଗମ୍ଭକରସଂ ମହାଭର (ରୁଧିରଂ) ଏବଂ ଚ ନଗ୍ନମୂର୍ତ୍ତୟଃ ଚ ମୈଥୁନ-ମିତି ।" ଏଣୁ ଜଗନ୍ନାଥ ହିଁ ତନ୍ତ୍ରସିଦ୍ଧ । ଉଡ୍ଡୀୟାନ ପୀଠରୂପେ ଜଗନ୍ନାଥ ପୀଠର ପ୍ରାଧାନ୍ୟ ରହିଛି । ଅଷ୍ଟମ ଶତାବ୍ଦୀରେ ଶ୍ରୀଜଗନ୍ନାଥଙ୍କୁ ପ୍ରଣାମପୂର୍ବକ ସିଦ୍ଧ ଇନ୍ଦ୍ରଭୂତି ବୌଦ୍ଧତନ୍ତ୍ରଶାସ୍ତ୍ରର ରଚନା କରିଥିଲେ ।

ତନ୍ତ୍ରଦର୍ଶନର ପ୍ରଭାବରେ ଅତ୍ୟନ୍ତ ଉଚ୍ଛିଷ୍ଟ ରୂପରେ ବିବେଚିତ ଅନ୍ନ ହିଁ ଏଠାରେ କୈବଲ୍ୟ ରୂପରେ ସର୍ବଗ୍ରାହ୍ୟ ଅଟେ । ଏଣୁ କୈବଲ୍ୟର ମାହାତ୍ମ୍ୟ ତନ୍ତ୍ରଚୂଡ଼ାମଣିଶାସ୍ତ୍ରରେ ବର୍ଣ୍ଣିତ ଅଛି—

"ସ୍ଥିତ୍ୱା ତୁ ସାଗରତୀରେ ଦୃଷ୍ଟ୍ୱା ତୁ ନ୍ୟଗ୍ରୋଧୋତ୍ତମଃ ବଟସାଗର ଯୋର୍ମଧ୍ୟେ ଦତ୍ତ୍ୱା ପିଣ୍ଡଂ ସଭକ୍ତିତଃ । କୈବଲ୍ୟପିଣ୍ଡସଂପ୍ରାପ୍ତେ ଲଭନ୍ତି ତୃପ୍ତିଃ ବିସ୍ତରୈଃ । ସତ୍ତୁଲୋକଂ ପରିତ୍ୟଜ୍ୟ ଲଭନ୍ତି ପରମାଗତିଃ ।" କୈବଲ୍ୟ ଗ୍ରହଣରେ କୌଣସି ଜାତି ଅଜାତିର ଭେଦଭାବ ନାହିଁ ବୋଲି ତନ୍ତ୍ରମଧ୍ୟ ସ୍ୱୀକାର କରେ । କୁଳାର୍ଣ୍ଣବ ତନ୍ତ୍ରରେ ଜାତି-ଅଜାତିର ଭେଦଭାବ ନାହିଁ ବୋଲି ମଧ୍ୟ ବର୍ଣ୍ଣିତ । ସାର୍ ଜନ୍ ଉଡ୍‌ରଫ୍ ମତ ଦିଅନ୍ତି—During the Cakra all eat, drink and worship together, there being no distinetion of Caste. ଏଣୁ ଜଗନ୍ନାଥପୀଠ ହିଁ ତନ୍ତ୍ରପୀଠ ଓ ତନ୍ତ୍ରପୀଠରେ ଅଷ୍ଟକିଳା ବା ଅଷ୍ଟଚଣ୍ଡୀ ଅର୍ଥାତ୍ ରାମଚଣ୍ଡୀ, ହରଚଣ୍ଡୀ, ବାସେଳୀ, ବାରହୀ, ଆଲମଚଣ୍ଡୀ, ଦକ୍ଷିଣକାଳୀ, ବିମଳା ଓ ଭୁବନେଶ୍ୱରୀଙ୍କ ସମାବେଶ ହିଁ ତନ୍ତ୍ରତତ୍ତ୍ୱର ସିଦ୍ଧାନ୍ତ ପ୍ରତିପାଦିତ କରୁଛି । ଏହି ତନ୍ତ୍ରତତ୍ତ୍ୱ, ତନ୍ତ୍ରସିଦ୍ଧଦେବାଦେବୀଙ୍କ ଗହଣରେ ଶ୍ରୀଜଗନ୍ନାଥ ତନ୍ତ୍ରରୂପୀ ଭାବରେ ସର୍ବାରାଧ୍ୟ ହୋଇ ଜଗତର ନାଥ ଭାବରେ ବିଶ୍ୱ ଦରବାରରେ ସୁବିଦିତ ହୋଇଛନ୍ତି ।



ଜୟ ଜଗନ୍ନାଥ ।

# ଶ୍ରୀଜଗନ୍ନାଥଙ୍କ ଅନୁରକ୍ତ ମୁସଲମାନ ଭକ୍ତ

ସଦାଶିବ ରଥଶର୍ମା

ପ୍ରଭୁ ଜଗନ୍ନାଥଙ୍କ ଅପାର ମହିମା । କିଏ ତାଙ୍କୁ କେଉଁ ରୂପରେ ଦେଖି ହୃଦୟର ଆବେଗ ପ୍ରକାଶ କରେ ତାହାର ଆଦି ଅନ୍ତ ନାହିଁ । ବ୍ୟବହାରକୁ ସେ ହିନ୍ଦୁର ଠାକୁର । କିନ୍ତୁ ସେ ସମସ୍ତ ଧର୍ମ ଓ ଧାର୍ମିକ ବିଗ୍ରହରେ ଆତ୍ମପ୍ରକାଶ କରିଅଛନ୍ତି । ତାଙ୍କର ମହିମାରେ ବହୁ ମୁସଲମାନ ଭକ୍ତ ଆକର୍ଷିତ ହୋଇ ଭକ୍ତିପୁଷ୍ପ ଅର୍ପଣ କରିଛନ୍ତି । ଭକ୍ତଶ୍ରେଷ୍ଠ ସାଲବେଗଙ୍କର ଜଗନ୍ନାଥ ଭଜନମାନ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ଶ୍ରୀ ଚୈତନ୍ୟଙ୍କ ସମୟରେ ଯବନ ହରିଦାସ ସିଦ୍ଧବକୁଳ ମୂଳରେ ନାମ ଜପକରି ଆମ୍ଭମାନଙ୍କ ବିଦଗ୍ଧ ମନରେ ଆସନ ଲାଭକରି ଯାଇଛନ୍ତି । ବହୁ ମୁସଲମାନ ବୈଷ୍ଣବ ଧର୍ମ ଗ୍ରହଣକରି ପୁରୁଷୋତ୍ତମ କ୍ଷେତ୍ରରେ ଜଗନ୍ନାଥଙ୍କର ଚରଣରେ କାବ୍ୟ କୁସୁମାଞ୍ଜଳି ପ୍ରଦାନ କରିଯାଇଛନ୍ତି । ମୁଁ ଏହି ବିଷୟଟେ, କାମରୂପ କ୍ଷେତ୍ରର କାଳିପୁର ଆଶ୍ରମରେ ପ୍ରଥମେ ଶୁଣିଲି । ସେ ଆଶ୍ରମରେ ମୁସଲମାନ ବୈଷ୍ଣବମାନଙ୍କର ଏକ ତାଲିକାରେ ପୁରୀ କ୍ଷେତ୍ରର କେତେକ ଭକ୍ତଙ୍କର ନାମ ଦେଖିବାକୁ ମିଳିଲା । ସେମାନଙ୍କ ମଧ୍ୟରେ ୨ଜଣ ମାରଓ୍ୱାଡ଼ି ପ୍ରଦେଶର ଓ ଅନ୍ୟମାନେ ବଂଗପ୍ରଦେଶର ବୋଲି ଉଲ୍ଲେଖ ଥିଲା । ଦୁଇଜଣ ପୁରୀ କ୍ଷେତ୍ରବାସିଙ୍କ ନାମ ଉଲ୍ଲେଖ ଥିଲା । ସେମାନଙ୍କର ନାମଥିଲା ଦରିଆ ବାବା ଓ ଗୁଲାଲ ଦାସ ଗୋସାଇଁ । ସେହି ଆଶ୍ରମରୁ ପ୍ରକାଶିତ "ପ୍ରବନ୍ଧାବଳୀ" ନାମକ ପୁସ୍ତକରେ ମୁସଲମାନ ବୈଷ୍ଣବମାନଙ୍କ ନାମ ଓ କୃତିର ପରିଚୟ ପ୍ରଦତ୍ତ ହୋଇଥିଲା । ✓ ଚଗଲା ଦାସ କେତେଗୁଡ଼ିଏ ମୁସଲମାନ ଭକ୍ତଙ୍କର ନାମ କହିଲେ ଓ ଦରିଆ ସାହେବଙ୍କ ଗାଥା ଗାଇଥିଲେ । କ୍ରମେ ଅନୁସନ୍ଧାନରୁ ଓ ପ୍ରୋକ୍ତ ପ୍ରବନ୍ଧାବଳୀ ପୁସ୍ତକର ସହାୟତାରେ ସେମାନଙ୍କର ନାମ ଓ କୃତି ଏଠାରେ ଉଲ୍ଲେଖ କରାଯାଉଛି । ବାରଣ ସାରେ "ବରପଂଖାଙ୍କ ଗଂଗାସ୍ତୋତ୍ର" ଶୁଣିବାକୁ ପାଇଥିଲି । ତାଙ୍କର ରଚିତ କାସେମ ଆଲିନ, ରାଧା ପ୍ରେମ ସମ୍ବନ୍ଧୀୟ କାବ୍ୟରୂପରେ ଖ୍ୟାତ । ତାଙ୍କରି ପରମ୍ପରାରେ ରହିମ ଖାଁଙ୍କର ନାମ ଉଲ୍ଲେଖଯୋଗ୍ୟ ।

ସେ ଲେଖୁଛନ୍ତି—

ଅଜୁଦିନ ଶ୍ରୀ ବୃନ୍ଦାବନ ବ୍ରଜତେ
ଆ ହୟ ନ ଆୟ ନ ଜାନି
ଅଭ ରହ୍ରିମ ଚିଭତେ ନ ଚିରତି ହେ
ସକଳ ସାମ ଜୀ ଦାନୀ । ରହ୍ରିମ ଖାଁ

"ମୁସଲମାନ ବୈଷ୍ଣବ" ପ୍ରବନ୍ଧରେ "ବଂଗଶ୍ରୀ" ୧୩୮ ଅବ୍ଦରେ ବହୁ ଟାଗା ପ୍ରକାଶ କରି ଯାଇଛନ୍ତି । ସଂପ୍ରତି ସେଥିମଧ୍ୟରୁ ଜଗନ୍ନାଥ ଭକ୍ତମାନଙ୍କର କାବ୍ୟ କୃତି ଏଠାରେ ପ୍ରକାଶ କରାଯାଉଛି । ଅନ୍ୟତମ ବୈଷ୍ଣବଭକ୍ତ ଓ ଜଗନ୍ନାଥ ନୁରକ୍ତ 'ରସଖାନ୍' ଙ୍କର କୃତି ଓ ପରିଚୟ କାଳିଆଶ୍ରମର ତାଲିକାରେ ଅଛି "ରସଖାନ୍ ମୁହମ୍ମଦ ବଡ଼ ଭକ୍ତ ଛିଲେନ୍ ଜଗନ୍ନାଥ ଦେବେର ।" ତାଙ୍କର ପ୍ରକାଶିତ ରଚନାରୁ ଶ୍ରୀକୃଷ୍ଣଭାବ ସମ୍ପନ୍ନ ପଦ ମିଳିଛି ମୁଦ୍ରିତ ଆକାରରେ ପରନ୍ତୁ ଜଗନ୍ନାଥଙ୍କ ସମ୍ବନ୍ଧରେ ସେ ଯାହା ଲେଖିଛନ୍ତି ତାହା ପ୍ରକାଶକୁ ଆସିନି । ତାହାର ନିଦର୍ଶନ ଦେଖନ୍ତୁ ।

ମାନୁଷ ହୋ ତୋ ହୟ ହୋ ରସଖାଁନି
ରସୋ ବ୍ରଜଗୋକୁଲ ଖାଁ ହୃଦୟ ଶ୍ୱାବନ
ଯୋ ପଶୁ ହୋ ତ କହୁଁ ବସୁ ମେ ମେରା
ଚରେ ନିତ ନନ୍ଦକୀ ଧେନୁ ଚରବନ ।।

(ମନୁଷ୍ୟ ହେବାକୁ ଚାହୁଁଛତ ମନକୁ ବ୍ରଜଭୂମିର ରସଖଣିରେ ମଜ୍ଜାଇରଖ । ପଶୁହେବାକୁ ଚାହୁଁଛତ ନନ୍ଦନନ୍ଦନଙ୍କ ଗୋଠର ଗାଈ ହୋଇ ରହ ।"ପ୍ରବନ୍ଧାବଳୀ, ପ୍ରଥମଖଣ୍ଡ, ୪ ପୃଷ୍ଠା")

(ଦରିୟ ସାହେବ ଓରଫ କେଶବ ଦାସ ଗୋସ୍ୱାମୀ ଜଗନ୍ନାଥ ଧାମେର ପରମଭକ୍ତ ଛିଲେନ୍ ।) ଦରିଆ ସାହେବଙ୍କ ବିଷୟରେ କିଛି ପରିଚୟ ମିଳିଛି । ଦରିଆ ହନୁମାନଙ୍କ ନିକଟରେ ଦରିଆବାବା କା ସରଇଥିଲା ଯାହା ବିଶ୍ୱପ୍ରଣବ ସ୍ୱାମୀ ଉଦ୍ଧାର କରିଥିଲେ ଓ ସେଠାରେ ରହୁଥିଲେ । ଜଗନ୍ନାଥ ବଲ୍ଲଭ ମଠରୁ ତାଙ୍କର ଆଶ୍ରମ ଏକ ମହାପ୍ରସାଦ ପାରୁଶ ପାଉଥିଲେ । ସେ ଲେଖୁଛନ୍ତି—

।। ବୈଷ୍ଣବ ଓ ମୁସଲମାନ ୪ର୍ଥ ପୃଷ୍ଠାରୁ ।।

ମୁରଲି କୋନ ବଜାୟେ ଯୋ ହୋ ଗଗନ ମଣ୍ଡଳକେ ବିଚ
ତ୍ରିକୂଟ ସଂଗମହୋୟ କର ଗଂଗ ଯମୁନାକେ ଘାଟ ।।
ଯାମୁରଲି କେ ସରସେ ସହଜରଙ୍ଗ ବୈରଟ
ଗଂଗ ଯମୁନାକେବିଚ ମୁରଲିବାଜେ—
—ଉତ୍ତର ଦିଶି ଧୁନୀହ ହୋଇ ।।
ଯା ମୁରଲିକୀ ଟେରଇ ସୁନ୍‌ସୁନ ରହି ଗୋପୀକା ମୋହି ।।
ଜହି ଅଧର ଡ଼ାଲି ହଂସା ବୈଠା ଚୁନ୍‌ତ୍ ମୁକ୍ତାହିର
ଆନନ୍ଦ କନ୍ଦହବାକେନ କରତୁ ହେ ମାନସ ସରୋବରତୀର
ଶଂଖଧୁନ ମୃଦଙ୍ଗ ବାଜତ ହେ ବାରହ ମାସ ବସନ୍ତ ।।
ଅନାହତ ଧ୍ୟାନଲଗଡ଼ ଅତୁଲ ହୁୟେ ଧାବତ ସହି ସନ୍ତ ।।
କାହ୍ନାଇ ଯୋଗୀ କରତ ନୃତ୍ୟଇ ଚରଣ ବପୁହି ବିନା
ନୈନ ଦିନ ଦରି ୟ ହଏ ଦେଖେ ଆନନ୍ଦ ରୂପଘନା, ।।

ଝୁଲଲିଆଗଞ୍ଜ ଧର୍ମସଭରେ ୰ ଚଗଲୁ ଦାସ ସକଲ ଦରିଆ ଗୋସାଇଁଙ୍କର ନାମ ଉଚ୍ଚାରଣ ପୂର୍ବକ ଦରିଆ ସାହେବଙ୍କ ନିମ୍ନ ଗୀତଟି ଗାୟନ କରିଥିଲେ ଶତଜନତାଙ୍କ ସମ୍ମୁଖରେ—

ବେଣୁ ବାଜୁଛିରେ ବେଣୁ ବାଜୁଛିରେ
ଶୂନ୍ୟରେ କିଏ ବଜାଏ
ତ୍ରିକୂଟସନ୍ଧିରେ ଗଂଗାଯମୁନାର ଘାଟ କିଏ ଚମକାଏ
ବେଣୁ ବାଜୁଛିରେ (୨ଥର)

ଯାର ନାଦ ଶୁଣି ବିରଟ ନଗର
କମ୍ପଇ ଉତ୍ତରୁ ନାଦ ଶୁଭଇ
ସଖୀଏ ସେ ଗୀତ ଶୁଣି ନାଚୁଥାନ୍ତି
କାଳିଆର ମନମୋହି ।
ବେଣୁ ବାଜୁଛିରେ............... ।

ହିଆରେ ତାହାର ହଂସ ଖେଳୁଅଛି
ହିର ମାଣିକ ମଣ୍ଡନ
ମାସସର ସରରେ ଖେଳୁଛି ଯେ ହଂସ
ହଂସ ଆନନ୍ଦ ବଦନ ।।

ବେଣୁ ବାଜୁଛିରେ.....।
ତାଧିନ୍ ତାଧିନ୍ ମୃଦଙ୍ଗ ବାଜଇ
ବାରମାସ ଋତୁରାଜ,
ଅନାହୁତ ନାଦ ଶୁଣିବାକୁ ନିତି
ଚହଳ ସାଧୁ ସମାଜ
ବେଣୁ ବାଜୁଛିରେ,....।
କାହ୍ନୁ ଗୋପୀଧରାଧରି ହୋଇଣ
ନାଚନ୍ତି ପାଦେ ନଥାଇ ନୁପୁର
ସେ ତାନକୁ ଶୁଣି ଦରିଆ ଦାହିବ
ମନ ନରହେ ଟି ସ୍ଥିର ।
ବେଣୁ ବାଜୁଛି ରେ,....।

ତାଙ୍କର ଖୁବ୍ ପ୍ରତିଷ୍ଠା ସାଧୁ ସମାଜରେ ରହିଥିଲା । ସେ ଯୋଗ ଓ ଯୋଗ-ଭକ୍ତିର ସମନ୍ୱୟ ବାଦୀଥିଲେ ।

ତାଜଫକୀର — ତାଜଫକୀର ପୁରୀରେ ରହି କୃଷ୍ଣରସର ସାଧନା କରୁଥିଲେ । ସେ ଜଗନ୍ନାଥଙ୍କ ପ୍ରସାଦପୁଷ୍ପକୁ ଅତି ପବିତ୍ର ମାନୁଥିଲେ । ତାଙ୍କର ଭଜନ ବୋଲି, ସେ ତିନବାର ଶ୍ରୀମନ୍ଦିର ବାହାର ବେଢ଼ା ପରିକ୍ରମା କରୁଥିଲେ । ଏବେମଧ୍ୟ ପ୍ରବାଦ ଅଛି ।।

ତାଜ ସାହେବ କା ସାଜବଢ଼ା
ନିତ୍ କରତା ତିନବେଢ଼ା ।

ତାଙ୍କର ପ୍ରଚଳିତ "ତାଜ"ର ପ୍ରଚଳନ ଆମର ହରଚଣ୍ଡି ସାହିରେ ଏବେ, ମଧ୍ୟ ଅଛି । ଗୋଟିଏ ପାତିରେ ଜଗନ୍ନାଥଙ୍କ ପ୍ରସାଦ ରଖି ଗୋଟିଏ ଗ୍ରରିକୋଣିଆ କନା ତିଆରି "ତାଜ" ସେମାନେ ସାତ୍ତ୍ୱିକ ରୀତିରେ ପୂଜାକରି-ଥାନ୍ତି । ତାଙ୍କର ଗୀତ ସମ୍ପୂର୍ଣ୍ଣ କୃଷ୍ଣରସାତ୍ମକ ଅଟେ । ତାଙ୍କର କୃଷ୍ଣରସାତ୍ମକ ଗୀତାବଳୀ ବୈଷ୍ଣବମୁସଲମାନ ପୁସ୍ତକରେ ପ୍ରକାଶ ପାଇଛି ।

ଶେଖ ଶାହଜାନି:— ନିରକାର ପୁର ନିକଟସ୍ଥ ପିର ସାହେବଙ୍କ ଗାଦିର ସେ ଜଣେ ଫକୀର । ସେ ରସଲୀଳା ଗାୟନ କରୁଥିଲେ । ସେ ହରଚଣ୍ଡି ସାହି ଗାଦି ଜଗନ୍ନାଥ ପଢ଼ିଆରୀଙ୍କର ଗୁରୁବନ୍ଧୁ ଥିଲେ ଓ ଜଗନ୍ନାଥଙ୍କର ପରମଭକ୍ତ ଥିଲେ । ତାଙ୍କର ବହୁ କୃଷ୍ଣରସାତ୍ମକ ରଚନା ଦେଖାଯାଏ । କାମରୂପସ୍ଥ

ଭୂମାନନ୍ଦ ଆଶ୍ରମରୁ ଶେଖ ସାହିବଙ୍କ ରଚନା ମୁଁ ନିଜେ ସଂଗ୍ରହ କରିପାରିଛି । ଶାହଜାନି ବା ଶାଦଜାଦି ଆମ ପାଲାସାହିତ୍ୟରେ ଅତ୍ୟନ୍ତ ପରିଚିତ । ସେ ପିର ଓ ଜଗନ୍ନାଥ-କୃଷ୍ଣଙ୍କୁ ଅଭିନ୍ନ ମାନୁଥିଲେ । 'ବୈଷ୍ଣବ ମୁସଲମାନ' ଗ୍ରନ୍ଥର ୬ ପୃଷ୍ଠାରେ ତାଙ୍କର ବହୁ ରସଗୀତ ପ୍ରକାଶ ପାଇଛି । ସେ ହିନ୍ଦି ଭାଷାଭାଷିଥିବା ଅନୁମାନ । "ସେକ୍ ଲେସ୍‌ନେ କହୁଁ କଲେସ କୋନ୍‌ଲେଶ ନରହୋ ।" ତାହାଙ୍କର ରଚିତ ଏକପଦ୍ୟ, ଏଠାରେ ଅନୁଧ୍ୟାନ ଯୋଗ୍ୟ—

କାହ୍ନାକେ ରଙ୍ଗ୍ ପ୍ରେମ ନ କା ଧାର ।
ଯମୁନାତଟି ସାଗର କୋପ୍ୟାର ।
ଗୋବର୍ଦ୍ଧନ୍‌କା ରିସିଲି ଝାକି
ଚଲା ଜାଲର ଚଟିଲର ଶରିକି ।
ଆସି ସଖୀ ଦେଖୋ (ପ୍ରେମ) ପ୍ୟାର ନମୂନା,
ଦେଖା ନିମାଇଁ ହରିଦାସ ମୁଲ୍ଲା
ନାମରଟକେ ବିତା ଜମାନା ।
ରାଧା ରାଧା ଶୋଚ ଶୋଚକେ
କାହ୍ନାଭୟେ ଇହାଁ ଲକଡି ନିଶାନା
ଗୋପୀ ଛୋଡ଼କେ ବହନ କି ପ୍ୟାରୀ
ଛୋଡା ରସ କି ପ୍ରେମ ଖଜାନା,
ଅରି ସଖୀ ଦେଖୋ ପ୍ୟାର ନମୂନା ।
ଦାସୀ ନାଚକେ ପ୍ରିତଜଗାୟା
କିଶନ ଭୟେ ଜଗଦୀଶ ଘରନା ।
ଭରତ, ଜପିତ ରାଧାନାମ ଧାର
ଗୋର ଗଲାୟା ପଥର ସାର,
ଶେଖସାହଜାଡି ଜଗନ୍ନାଥକୋ
ପହରନ କେ କିହନ ପ୍ୟାର,
ଅରିସଖୀ ଦେଖୋ ପ୍ୟାର ନମୁନା ।

ଏ ଗୀତରେ କୃଷ୍ଣଚନ୍ଦ୍ର ଓ ଜଗନ୍ନାଥଙ୍କ ମଧ୍ୟରେ ଥିବା ପ୍ରେମମୟ ସମ୍ବନ୍ଧକୁ ସେ ପ୍ରକାଶ କରିଅଛନ୍ତି । ତାହାଙ୍କର ଆଉ ଗୋଟିଏ ନାମ ନିରାକାରପୁର

ଅଞ୍ଚଳରେ ଶୁଣାଯାଏ ତାହା ଶେଖ ମର୍ଦ୍ଦଗାଜି । ମର୍ଜଗଜି ପାଲ୍ଲ ତାଙ୍କ ନାମରେ ଭଣତି । ପାତ୍ର ମର୍ଦ୍ଦଗଜି ପାଲାର ଭାଷା ବଂଗଳା ମିଶା । ତେଣୁ ଶାହଜାଦି ମର୍ଦ୍ଦଗାଜି ଏ ଦୁଇଜଣ ପୃଥକ ବ୍ୟକ୍ତି ହେବେ । ଶାହଜାଦି ଶେଖଙ୍କର ବହୁ ହିନ୍ଦି କବିତା ପ୍ରକାଶ କରିଛନ୍ତି, ସ୍ୱାମୀ ଭୂମାନନ୍ଦ ପରିବ୍ରା'ର ।

ଅନ୍ୟଏକ ଟୁଲ୍ଲାଲ ସାହେବଙ୍କ କଥା ଏଠାରେ ପ୍ରକାଶ କରଯାଇ ପ୍ରସଙ୍ଗର ଉପସଂହାର କରିବା । ସେ ଅଚ୍ୟୁତାନନ୍ଦ ମହାପୁରୁଷଙ୍କ ପୁରୀ ଗାଜି ଟଙ୍କର୍ବ ମଠରେ ରହୁଥିଲେ । କାର୍ତ୍ତିକ ପୂର୍ଣ୍ଣିମା ଦିନ ଟୁଲ୍ଲାଲ ଗୋସ୍ୱାମୀଙ୍କ ମହୋତ୍ସବ ଏଠାରେ ହେଉଥିବାର ପ୍ରଚଳନ ଅଛି । ସେ ଅଚ୍ୟୁତାନନ୍ଦଙ୍କର ଶିଷ୍ୟ ଥିଲେ (?) ତାଙ୍କ ପଦ୍ୟାବଳିରୁ ଏପରି ଅନୁମାନ ହେଉଛି । ସେ ଲେଖିଛନ୍ତି ବାଦ୍ୟନାହିଁ ଶବଦଶୁଭୁଛି, ଚରଣ ନାହିଁ, ସେ ନୃତ୍ୟ କରୁଛି । ଗଗନମଣ୍ଡଳ (ସହସ୍ରାର)ରେ ଅନାହତ ଶବଦ୍ ଶୁଣି ହୃଦୟ ପ୍ରେମ ଭକ୍ତିରେ ପୂରିଯାଉଛି । ସେଠାରେ ବ୍ରହ୍ମା, ଶିବ କେହିନାହାନ୍ତି । ଏକ ମାତ୍ର ଭକ୍ତ ବତ୍ସଳ ଅଲେଖସ୍ୱାମୀ (ପୁରୁଷ) ଅଛନ୍ତି । ପଞ୍ଚସଖାଙ୍କ ମଧ୍ୟରୁ ଅଚ୍ୟୁତାନନ୍ଦ ଜଗନ୍ନାଥଙ୍କୁ ଅଲେଖ ପୁରୁଷ ବୋଲି ମାନୁଥିଲେ । ଟୁଲ୍ଲାଲଜୀ କହିଛନ୍ତି—

ସେ ଅନ୍ଦର ମହଲରେ ଆରତି ହେଉଛି ।
ସେ ପୁରୁଷର ମସ୍ତକ କୋଟିଚନ୍ଦ୍ରସମ ।
ଧବଳ ରତିଶୋଭପାଉଛି ମୁଁ ହଛମାନେ
ଆରତି କରୁଛନ୍ତି ମୁଁ ଦେଖି ପାରୁଛି ।
ବ୍ରହ୍ମା ବିଷ୍ଣୁ ଶିବ ତହିଁ ନାହିଁ
ଅଲଖ ପୁରୁଷ ଅନୁରାଗୀ
ଅଧର ଅନ୍ଦର ମହଲ ମେ ଆରତି ହୋ'ଓତ
ସେତଛତ୍ରସାଜି
କୋଟି ଚନ୍ଦ୍ର ବିରାଜରି ଦ୍ୱାରରେ
ଆରତି ଭଇ ବଡ ଭାଗି
ସଂନସାଧୁମିଳି ଆରତି ହେଉରେ
କହି ଟୁଲ୍ଲାଲ ବଇରାଗି ।
'ମୁସଲମାନ-ବୈଷ୍ଣବ' (୩୭ ପୃଷ୍ଠା) ।

ଏହାଙ୍କ ରଚନା ଶୈଳୀ ପଞ୍ଚସଖା ଯୁଗର ଅଲେଖ ଭାବର ଶୈଳୀ ପୃଥକ ନୁହେଁ । ତାଙ୍କର ଅନ୍ୟ କେତେକ ପଦ୍ୟ 'ଏହି ଅଲେଖପୁରୁଷ ଜଗନ୍ନାଥ ଭାବନାରେ ରହିଛି,

ଯାନ୍ତ୍ରାସ୍ୱତନ୍ତ୍ର ପ୍ରବନ୍ଧ ସାପେକ୍ଷ । ସେ ମାରବାଡ଼ିର ମୁସଲମାନ ଭକ୍ତଥିଲେ । ତାଙ୍କର ଶିଷ୍ୟଥିଲେ ବୁଲ୍‌ଟୁ ସାହେବ । ସ୍ୱାମୀ ଭୂମାନନ୍ଦଜୀ ମହାରାଜ ଲେଖିଛନ୍ତି— ଏ ଭକ୍ତମାନେ ମୁସଲମାନ ଥିଲେ ମଧ୍ୟ ହିନ୍ଦୁ ନାମ ବହନ କରୁଥିଲେ । ଯଥା—

ମାରି ସାହେବ (କେଶବ ଦାସ) ବୁଲ୍ଲା ସାହେବ

(ଜଗଜ୍ଜୀବନ ଦାସ ଗୋସାଇଁ)

ତାଙ୍କର ଶିଷ୍ୟ ଭିଖାନନ୍ଦ ଗୋସାଇଁ, ତାଙ୍କ ଶିଷ୍ୟ ଗୋବିନ୍ଦ ସାହେବ ଓ ପଲ୍‌ଟୁ ମହାରାଜଙ୍କ ପର୍ଯ୍ୟନ୍ତ ତାଙ୍କ ପରମ୍ପରା ଚାଲୁଥିଲେ । ଯେଉଁ ସମୟ ଅର୍ଥାତ ୧୬ଶ ଶତାବ୍ଦୀର ଶେଷଭାଗରୁ ୧୮ଶ ଶତାବ୍ଦୀର ମଧ୍ୟଭାଗ ପର୍ଯ୍ୟନ୍ତ ଓଡିଶାରେ ମୁସଲମାନ ଭକ୍ତଙ୍କର ଖୁବ୍ ପ୍ରଭାବଥିଲା । ସତ୍ୟପିର୍ ଓ ଜଗନ୍ନାଥଙ୍କର ସମନ୍ୱୟ ନିମନ୍ତେ ସେମାନେ ଚେଷ୍ଟିତ ଥିଲେ । ନଚେତ୍ ଗଣେଶ ବିଭୂତି ଗ୍ରନ୍ଥରେ କିପରି ଆସନ୍ତା—

॥ ଅଲ୍ଲାଲ୍ଲା ହିଁ ବିଦ୍ମହେ ବିସମଲ୍ଲାହି ଧୀମହୀ

ତନ୍ନୋପିର ପ୍ରଚୋଦୟାତ୍ ।”

ଓଡିଶାର ଏହିସମୟରେ ଜଗନ୍ନାଥଙ୍କୁ କେନ୍ଦ୍ରକରି ମୁସଲମାନ ଭକ୍ତମାନେ ବୈଷ୍ଣବଧର୍ମ ମଧ୍ୟରେ ଖୁବ୍ ପ୍ରସିଦ୍ଧ ହୋଇଥିବା ଅନୁମାନ ।

ଏହିପରି କେତେ ଇସଲାମ ଭାଇ କୃଷ୍ଣରସରେ ନିଜକୁ ରସାଇଦେଇଛନ୍ତି । ଶ୍ରୀଚୈତନ୍ୟ ଦେବଙ୍କ ପରେ ପରେ ସେମାନଙ୍କର ପ୍ରେମ ଭଣାଅଧିକେ ଜଗନ୍ନାଥଙ୍କ ପ୍ରତି ଆକୃଷ୍ଟ ହୋଇଥିଲା । ଦନ୍ତକଥା ଅନୁସାରେ ପୁରୀରେ ଶେଖ ମମ୍‌ଦରମିଆଁ ସାହେବ ନାମକ ଭକ୍ତ ଏପରି ଜଗନ୍ନାଥ ପ୍ରିୟ ଥିଲେ ଯେ ତାଙ୍କୁ ପୁରୀରାଜକର୍ମ-କର୍ତ୍ତା ଗଣେଶ ଗୁରୁଜ ଓ ଗୋପୀନାଥ ବଲ୍ଲଭ ମଧ୍ୟରେ ଥିବା ଶ୍ରୀଜୀଉଙ୍କ ଚନ୍ଦନ ବିଜେ ଦାଣ୍ଡରେ ସ୍ଥାନ ଦେଇଥିଲେ । ଆଜି ସେଠାର ମୁସଲମାନ ବସ୍ତି ସେପରି ରହିଛି । ପ୍ରଭୁ ସେହିବାଟେ ଚନ୍ଦନ ଯାତ୍ରାକୁ ବିଜେ କରୁଛନ୍ତି । ଦ୍ୱେଷ ନାହିଁ, କୁଣ୍ଠାନାହିଁ । ଶେଖ ମମଦର ମିଆଁଙ୍କ ପଦ ଆଜିମଧ୍ୟ ପୁରୀର ମୁସଲମାନ ବାସିନ୍ଦାଙ୍କ ମୁହଁରୁ ଶୁଣାଯାଏ—

କେଶୋମୁସାମେ ଫାରକନେହିଁ ଫାରକନେହିଁ
ମୁହବତ୍ ମେ ତରକ ନେହିଁ ତରକ ନେହିଁ
ବାଜା ଗାଜା ବାହାର ବଦଉଅନ୍ଦର ଭଯୌ ନିରାଲା
ଚନ୍ଦନପୋଖରି ଝଲଝଲ ଚମକେ ଖେଲତ ମଖ୍‌ନଚୋର

ଆବତ ଯାବତ କୁଦତ ଖେଲତ ଖୁଦାକେ ଦରବାର
ଘରବିଲ ପେ'ନଜର ଉଠାବତ ମିଆଁ ଶେଖ ମମଦର ।

ଏହିପରମ୍ପରା ୧୯୭୦-୭୧ରେ କଟକ ଜିଲ୍ଲା ଡାଳିଯୋଡ଼ା ବହରମପୁର ଗ୍ରାମର ସେକ୍ ବାଲ୍‌କର ମହମ୍ମଦଙ୍କ କଣ୍ଠରୁ ଜଗନ୍ନାଥ ପ୍ରଶସ୍ତି ଓଡିଶାରେ ପ୍ରସିଦ୍ଧଥିଲା ।

ବାରେ ଚକା ନୟନ ଦିଅ ଖୋଲି ହେ
ତୁମକୁ ପଚାରି ନେବି କାହିଁକି
ସାରା ଦୁନିଆଁ ଗତି ପରମାତ୍ମା
ଏଠି ଏଡ଼େ ଅବିଚାର କାହିଁକି ।

ସେ ଜଗନ୍ନାଥଙ୍କୁ ଅଜାଡିଆ ଜଗନ୍ନାଥ ବୋଲି କହି ଲେଖିଛନ୍ତି ।

ଅଜାଡିଆ ଜଗନ୍ନାଥ
ଡୋର ଖଣ୍ଡିଆ ହାତରେ ଅଜାଡିଆ ଜଗନ୍ନାଥ,
ଭାଇ ଭଉଣିଙ୍କୁ ପାଖରେ ବସାଇ
ପଇସା ଲୋଭରେ ବିକିଲୁ ଭାତ,
ଅଜାଡିଆ ଜଗନ୍ନାଥ ।

"କବିକଣ୍ଠେ ଜଗନ୍ନାଥ" (୪୭୭ ପୃଷ୍ଠା)

ପିପିଲି ନିକଟରେ ପରିପାଟଣା ଗ୍ରାମରେ ପ୍ରାୟ ଶହେ ବର୍ଷ ତଳେ ରହିମତୁଲ୍ଲା ନାମକ ଜଣେ ଜଗନ୍ନାଥଙ୍କ ଭକ୍ତ ଥିଲେ । କେହି କେହି କହନ୍ତି ତାଙ୍କନାମ ଥିଲା ରସଖାନି ରହିମ ତୁଲ୍ଲା । ତାଙ୍କର ମଧ୍ୟ ବହୁପଦ ମିଳେ । ସେଥିରୁ ଗୋଟିଏ ଦେଇ ବିଷୟ ପ୍ରସଙ୍ଗ ଶେଷ କରିବା ।

ତୁମ ସବକା ପ୍ୟାର ସବ୍ ସେ ନ୍ୟାର
ଜଗକେ ମାଲିକ ନାମ ତୁମାର ।
ତୁମ୍‌ପିର ସାହେବନ୍ କହତାହେରା ନିଶାନଯାର
ଗ୍ରହ ନଛତର ଉଡ଼ତ ଅସମାନମେ ଦେଖବାଜର ।
ରଥପର ଆତା ସବକୋ ନମାତା
ସନ୍ତ ଫକିରକୋ ଦେତାପ୍ୟାର
ଫାଲତା ମାରତ ପିର କହାବତ
ରହିମତୁଲ୍ଲା ସେ ଦଦ୍ର ତୁମାର ।
ତୁମସବକା ପ୍ୟାର ସବ୍‌ସେ ନ୍ୟାର ।।

(ଉତ୍ତର ପ୍ରଦେଶରେ ଶ୍ରୀ ରଥଶର୍ମା ଦେହ୍ରବି ଅନ୍ ସୋନର ଧର୍ମସମନ୍ୱୟ ସଭାରେ ପଢିଥିବା ପ୍ରବନ୍ଧର ସାରାଂଶ) 

# ଅନବସର ନୀତି

ଶ୍ରୀ ରାମଚନ୍ଦ୍ର ଦାସମହାପାତ୍ର

ସ୍ନାନ ପୂର୍ଣ୍ଣମୀ ରାତିରେ ଠାକୁରମାନେ ସ୍ନାନବେଦୀରୁ ଫେରି ଶ୍ରୀମନ୍ଦିରର ଅଣସର ବା ଅନବସର ପିଣ୍ଡିରେ ରହନ୍ତି । ଅଣସର ପିଣ୍ଡିରେ ରହିବାପରେ ଦଇତାମାନେ ଠାକୁରଙ୍କ ଶ୍ରୀଅଙ୍ଗରୁ ରତ୍ନଚିତା, ଚନ୍ଦ୍ରରେଖା ବାହାର କରିଦିଅନ୍ତି । ଏହି ଅଳଙ୍କାରମାନ ଭଣ୍ଡାର ମେକାପଙ୍କ ମାର୍ଫତରେ ଭଣ୍ଡାରରେ ରଖାଯାଏ । ସ୍ନାନପୂର୍ଣ୍ଣମୀ ଠାରୁ ଆଷାଢ ଅମାବାସ୍ୟା ଯାଏଁ ଠାକୁରମାନେ ଅଣସରରେ ରହିବା ବିଧି ଅଛି ।

କୋଠସୁଆଁସିଆ ସେବକମାନେ ଅଣସର ପିଣ୍ଡି ଚାରିପଟେ ବାଉଁଶତାଟି ବେଢି ଦିଅନ୍ତି ଓ କେବଳ ଧୁକୁଡି ଦୁଆର ବାଟେ ଫେରୀ ବାଟଥାଏ । ଅଣସର ଭିତରକୁ କେବଳ ଦଇତାପତି ସେବକ ଛଡା ଅନ୍ୟମାନେ ଯାଇପାରିବେ ନାହିଁ । ଏହି ସମୟରେ ଠାକୁରମାନେ ଏକବସ୍ତ୍ର ପରିଧାନ କରୁଥିବାରୁ ଦଇତାପତିମାନେ ମଧ୍ୟ ଏକବସ୍ତ୍ର ପିନ୍ଧି ସେବାକରନ୍ତି ।

ଅଣସର ଦ୍ୱିତୀୟା ଦିନ ଠାକୁରମାନଙ୍କର ସ୍ନାନ ଯାତ୍ରା ପହଣ୍ଡିରେ ପିନ୍ଧିଥିବା ଓଦାବସ୍ତ୍ର ଦଇତାମାନେ ବାହାର କରିଥାନ୍ତି । ଚତୁର୍ଥୀ ଦିନ 'ଶ୍ରୀଅଙ୍ଗ ଫିଟା' ନୀତିହୁଏ । ଶ୍ରୀମୁଖ ଓ ଶ୍ରୀଅଙ୍ଗ ଖୋଲାଯାଏ । ପାଟବସ୍ତ୍ର ଓ ଲାଗିହୋଇଥିବା ଚନ୍ଦନ ବାହାର କରାଯାଏ । ପଞ୍ଚମୀ ଦିନ 'ଫୁଲରିଲାଗି' ହୁଏ । ଏହିଦିନ ଦଇତାପତି ମାନେ ରାଶୀତେଲ, ଚୁଆ, କର୍ପୂର ତିନିଠାକୁରଙ୍କ ବାଡରେ ପିଙ୍ଗାଶ ଓ ପରଖରେ ବିଛେ କରାଇ ଫୁଲରି ଲାଗି କରନ୍ତି । ଓଡିଆ ମଠ ଓ ଶ୍ରୀମନ୍ଦିର କର୍ତ୍ତୃପକ୍ଷ ରାଶୀତେଲ ଯୋଗାନ୍ତି ।

ଷଷ୍ଠୀ ଠାରୁ ନବମୀ ଦିନ ଯାଏଁ ଠାକୁରମାନଙ୍କୁ ଓଷୁଅଲାଗି କରାଯାଏ । ଅଣସର ସୁଡୁସୁଆର ଝୁଣା ବାଟି ଓଷୁଅ ତିଆରକରି ଯୋଗାନ୍ତି ।

ଦଶମୀଦିନ 'ଚକାବିଜେ' ନୀତିହୁଏ । ଏହିଦିନ ଧୂକୁଡିଦୂଆର ପାଖରେ ଥିବା ତିନୋଟି ଚକା ଦଇତାପତି ମାନେ ଗଡ଼ାଇକରି ନେଇ ଅଣସର ପିଣ୍ଡିରେ ପକାଇ ତିନି ଠାକୁରଙ୍କୁ ତହିଁରେ ବିଜେ କରନ୍ତି । ଏକାଦଶୀ ଦିନ ଚନ୍ଦନ ସହିତ କର୍ପୁର, କେଶର ବଟାହୁଏ । ଦଇତାପତିମାନେ ଉକ୍ତ ଚନ୍ଦନ ଠାକୁର-ମାନଙ୍କୁ ଲାଗି କରନ୍ତି । ଏହି ସମୟରେ ଘଣ୍ଟା, କାହାଳି ଓ ବାଜା ବାଜେ । ଅଣସର ତାଟି ଆଗରେ ବିରାଜିତ ଦଶାବତାର ଦିଅଁଙ୍କୁ ମଧ୍ୟ ଚନ୍ଦନ ଲାଗି କରାଯାଏ । ଅଣସର ପ୍ରଥମ ଦିନଠାରୁ ଦଶମୀ ଯାଏଁ ଠାକୁରମାନଙ୍କ କୌଣସି ନୀତିରେ ଘଣ୍ଟା, କାହାଳି ବାଜେ ନାହିଁ କିମ୍ବା ମନ୍ଦିରର କୌଣସି ସ୍ଥାନରେ ନାମ ସଂକୀର୍ତ୍ତନ ମଧ୍ୟ ହୁଏ ନାହିଁ । ଅଣସର ପିଣ୍ଡିରେ ଦିଅଁମାନଙ୍କୁ ପତି ମହାପାତ୍ର ସେବକ ସର୍ପା ମଣୋହିରେ ପୂଜା କରନ୍ତି । ଏହି ପୂଜାରେ ଘଣ୍ଟି, ଶଙ୍ଖ, ପିତା କିମ୍ବା ଥାଳି ବ୍ୟବହାର ହୁଏ ନାହିଁ ।

ଦ୍ୱାଦଶୀଦିନ ଭେଟମଣ୍ଡପ ଧୂପ ପରେ ଦଇତାପତିମାନେ ଅଣସର-ପିଣ୍ଡି ଭିତରକୁ କେତେକ ରୂପାଥାଳି ନେଇ ଥାଳିମାନଙ୍କରେ 'ରାଜପ୍ରସାଦ' (ଶ୍ରୀଅଙ୍ଗର ଚନ୍ଦନ ଓ କରଳ ଚନ୍ଦନ) ଓ ପାଟଡୋର ଥାଳିରେ ରଖନ୍ତି । ଘଣ୍ଟ, ଛତା ଓ କାହାଳି ସହ ତଳିଛ ମହାପାତ୍ର ଓ ପ୍ରଧାନୀ ହାତପଇଠ (ହ ତଛନ୍ତି) କରି ଆଗରେ ଚାଲନ୍ତି ଓ ଦଇତାପତିମାନେ ପଛରେ ଉକ୍ତ ଥାଳିଧରି ସିଂହଦ୍ୱାର ଓ ବଡ଼ଦାଣ୍ଡ ଦେଇ ଶ୍ରୀନଅରକୁ ଯାଆନ୍ତି । ସେଠାରେ ଦାଣ୍ଡ ଉପରେ ରାଜପ୍ରସାଦ ବାଡ଼ ବାଡ଼ କରି ବିଜେ କରନ୍ତି । ସେଠାରେ ରାଜାଙ୍କ ହାତରୁଆଁ ଶାଢ଼ୀ ମାନ ଦଇତା ଓ ପତିମହାପାତ୍ର, ସ୍ୱାଇଁ ମହାପାତ୍ର, ତଢ଼ାଉକରଣ, ଦେଉଳ କରଣ ଏବଂ ତଳିଛ ମହାପାତ୍ରଙ୍କୁ ପ୍ରଦାନ କରାଯାଏ ।

ତ୍ରୟୋଦଶୀଦିନ ଘଣାଲାଗି ଓ ଶ୍ରୀପୟର ମୁଜା (ପାଟଡୋର, ଖଳିପ୍ରସାଦ ଓ ଖଡ଼ି ପ୍ରସାଦ ଲାଗି) ହୁଏ । ଘଣାଲାଗି ଗୋଟିଏ ବର୍ଷ ଜଗନ୍ନାଥଙ୍କର ହେଲେ ଅରବର୍ଷ ବଡ଼ଠାକୁରଙ୍କର ହୁଏ । ପଚିଶହାତ ଲମ୍ବର ପାଟଡୋର ଠାକୁରଙ୍କୁ ଲାଗିହୁଏ । ପୁରୁଣା ଡୋର ଦଇତାପତି ନିଅନ୍ତି । ଘଣାଲାଗିପରେ ଖଳିଲାଗି ହୁଏ ଓ ତା'ପରେ ଖଡ଼ିଲାଗି ହୁଏ । ଲାଗି ସରିବାପରେ ଖଡ଼ି ପ୍ରସାଦ ଓ ମାଳଫୁଲ ଧରି ଦଇତାପତିମାନେ, ଦତ୍ତ ମହାପାତ୍ର ଓ ପ୍ରଧାନୀ ହାତପଇଠ ହୋଇ ରାଜନଗରକୁ ଯାଆନ୍ତି । ସେଠାରେ 'ରାଜପ୍ରସାଦ' ନୀତି ଭଳି, ଦତ୍ତ ମହାପାତ୍ର ଓ ଦଇତାପତିମାନେ ଶାଢ଼ୀ ପାଆନ୍ତି । ଏହିଦିନ

'ଶ୍ରୀମୁଖ ଓଡା' ନୀତିହୁଏ । ଏହି ନୀତିପରେ ଦତ୍ତମହାପାତ୍ର ବନକଲାଗି କରନ୍ତି ।

ଚତୁର୍ଦ୍ଦଶୀ ଓ ଅମାବାସ୍ୟା ଦିନ ମଧ୍ୟ ବନକଲାଗି ହୋଇଥାଏ । ଏହାପରେ ଦଇତାପତି ମାନେ 'ଚକା ଅପସର' କରନ୍ତି । ଅମାବାସ୍ୟା ରାତି ଶେଷରେ ଅଣସର ତାଟି ଖୋଲାଯାଏ ଓ ତାଟି ସମ୍ମୁଖରେ ଥିବା ଦଶାବତାର ଦିଅଁଙ୍କୁ ଆଳତୀ ଅବକାଶ ପରେ ଅନ୍ୟତ୍ର ସ୍ଥାନାନ୍ତର କରାଯାଏ ଓ ସକାଳେ ଦର୍ଶନାର୍ଥୀ ଭକ୍ତମାନେ ଶ୍ରୀଜୀଉମାନଙ୍କର ନବଯୌବନ ଦର୍ଶନ କରନ୍ତି ।

ଦଇତାପତି ସେବାୟତ କହିଲେ ଦଇତା ଓ ପତିମହାପାତ୍ର ଉଭୟ ଗୋଷ୍ଠୀର ସେବାୟତଙ୍କୁ ବୁଝାଏ । ପତି ମହାପାତ୍ର ହେଉଛନ୍ତି ଦଇତାପତି ନିଯୋଗର ପୁରୋହିତ ଓ ମୁଖ୍ୟ । ୨୧ ଦିନରୁ ଉର୍ଦ୍ଧ୍ୱ ଛୋଟ ଶିଶୁପୁତ୍ର ମଧ୍ୟ ଅଂଶୀଦାର ସେବାୟତ ରୂପେ ପରିଚିହ୍ନିତ ହୁଏ ।

ଏକାଦଶୀ ପର୍ଯ୍ୟନ୍ତ ଠାକୁରମାନେ ଶୁକ୍ଳବସ୍ତ୍ର ଓ ଶୁକ୍ଳ ଫୁଲ ପରିଧାନ କରନ୍ତି । ତୁଳସୀ ମୋଟେ ବ୍ୟବହାର ହୁଏନାହିଁ । ଏକାଦଶୀ ଚନ୍ଦନଲାଗି ପରଠାରୁ ବିଭିନ୍ନ ରଙ୍ଗର ଫୁଲ ଓ ବସ୍ତ୍ର ଏବଂ ତୁଳସୀ ବ୍ୟବହୃତ ହୋଇଥାଏ । ଅଣସର ସମୟରେ ଜୟବିଜୟ ଦ୍ୱାରଠାରୁ ଭିତର ସିଂହାସନ ଯାଏଁ ବିଦ୍ୟୁତ ଆଲୋକ ଜଳେନାହିଁ । ତେଲଦୀପ (ବଇଠା) ଜଳୁଥାଏ । ସାଧାରଣତଃ ଦେଖାଯାଏ ଯେ ଦଇତାପତି ସେବାୟତଙ୍କର ଦୃଷ୍ଟିଶକ୍ତି ଆଜୀବନ ଅକ୍ଷୁର୍ଣ୍ଣ ରହିଥାଏ ।

ଦଇତା ସେବାୟତ,
ଶ୍ରୀମନ୍ଦିର ।



# କୁଆମ ଚଣ୍ଡୀ

ଶ୍ରୀ ମହୀମୋହନ ତ୍ରିପାଠୀ

ଶ୍ରୀମନ୍ଦିର ଭିତର ବେଢ଼ାରେ ମୁକ୍ତିମଣ୍ଡପର ପୂର୍ବଦିଗରେ ଅନନ୍ତ ବାସୁଦେବ ମନ୍ଦିର, କ୍ଷେତ୍ରପାଳ ମନ୍ଦିର ଓ ଛୋଟ ସୂର୍ଯ୍ୟ ମନ୍ଦିର(ଯେଉଁଠି ଦୈନିକ ସକାଳେ ସୂର୍ଯ୍ୟପୂଜା ହୁଏ) ଅବସ୍ଥିତ । କ୍ଷେତ୍ରପାଳ ମନ୍ଦିରର ପୂର୍ବପଟ କାନ୍ଥ ଦେହରେ କୁକୁର ଉପରେ ବିରାଜିତା ଏକ ଦେବୀମୂର୍ତ୍ତି ବିଦ୍ୟମାନ । ଏହି ମୂର୍ତ୍ତି ପଥରରେ ନିର୍ମିତ । ଦେବୀ ଦ୍ୱି-ଭୁଜା ; ଗୋଟିଏ ହାତରେ ଖଡ୍ଗ ଓ ଅନ୍ୟ ହାତରେ ଖର୍ପର ଧରିଛନ୍ତି । ଏହି ମୂର୍ତ୍ତି ଏକ ଛୋଟ ବଖରା ବା ମନ୍ଦିରରେ ରହିଛନ୍ତି । ଏହି ମୂର୍ତ୍ତିକୁ କୁଆମଚଣ୍ଡୀ, କୁତାମଚଣ୍ଡୀ ବା କୁଟାମଚଣ୍ଡୀ କୁହାଯାଉଛି । କୁଆ (କୁକୁର) ଉପରେ ଜଣେ ଦେବୀ ବସିଥିବାରୁ ହୁଏତ କୁଆମଚଣ୍ଡୀ ନାମକରଣ ହୋଇଅଛି ! ଶ୍ରୀଜଗନ୍ନାଥ ମନ୍ଦିରର ସ୍ୱତ୍ୱଲିପିରେ କୁଆମଚଣ୍ଡୀ ମନ୍ଦିର ସମ୍ପର୍କରେ ଉଲ୍ଲେଖ ଅଛି ଯେ—"ଏହି ଠାକୁରାଣୀଙ୍କର ସେବକ ମୋହନ ପ୍ରଧାନ ଦୈନିକ ଏହାଙ୍କର ସେବା କରନ୍ତି । ସକାଳଧୂପପରେ ବଡବାଢ଼ର ଥାଳି ଆସି ଏହାଙ୍କୁ ସମର୍ପଣ ହେଲେ ସେବକ ସେଥିରୁ ମୋଞ୍ଚାଏ ପାଆନ୍ତି । ଅନ୍ୟକିଛି ଖଞ୍ଜା ନାହିଁ"(୨) । ସେବକ ମୋହନ ପ୍ରଧାନ (ପ୍ରଧାନୀ)ଙ୍କ ମୃତ୍ୟୁପରେ ଏବେ ତାଙ୍କ ପୁତ୍ର ଶ୍ରୀ ନାରାୟଣ ପ୍ରଧାନୀ ଏହି ଠାକୁରାଣୀଙ୍କର ସେବାପୂଜା କରନ୍ତି । ସେ ମଧ୍ୟ ଅନନ୍ତ ବାସୁଦେବ ମନ୍ଦିରର ପୂଜକ । ପ୍ରତିଦିନ ବଡ଼ବାଡ଼ ବା ବଳଭଦ୍ରଙ୍କ ବାଡ଼ର ଥାଳି ଖେଚୁଡ଼ି କୁଆମଚଣ୍ଡୀଙ୍କୁ ସମର୍ପଣ କରାଯାଏ । ବେଳେବେଳେ ସମର୍ପଣ କରାଯାଉନାହିଁ ବୋଲି ଅଭିଯୋଗ ହୁଏ ।

ଅନନ୍ତ ବାସୁଦେବ ମନ୍ଦିରର ଉତ୍ତରପାର୍ଶ୍ୱ କାନ୍ଥ ଦେହରେ (ଜଗମୋହନ ଆଡ଼କୁ ମୁହଁକରି) ଏକ ପଥରର କୁକୁର ମୂର୍ତ୍ତି ବିଦ୍ୟମାନ । ସେବକ ନାରାୟଣ ପ୍ରଧାନୀ ତାଙ୍କର ମଧ୍ୟ ପୂଜା କରନ୍ତି । କୁକୁର ଉପରେ ବିରାଜିତା ଦେବୀମୂର୍ତ୍ତି କୁଆମଚଣ୍ଡୀ କି ଏହି କୁକୁର ମୂର୍ତ୍ତି କୁଆମଚଣ୍ଡୀ, ତାହା ଗବେଷଣା ସାପେକ୍ଷ । କେତେକ ସେବାୟତ ଏ କୁକୁର ମୂର୍ତ୍ତିକୁ କୁଆମଚଣ୍ଡୀ କହୁଥିବାବେଳେ,

ଚମ୍ବକ ଶ୍ରୀ ପ୍ରଧାନୀ କୁକୁର ଉପରେ ବିରାଜିତା ଦେବୀମୂର୍ତ୍ତିକୁ କୁଆମଚଣ୍ଡୀ କହନ୍ତି ।

ଶ୍ରୀମନ୍ଦିର ପ୍ରଶାସନ ତରଫରୁ ପ୍ରକାଶିତ ଇଂରାଜୀ ବହି ଭିଜିଟ୍ ପୁରୀ (Visit Puri)ରେ ଉଲ୍ଲେଖ ଅଛି ଯେ ଏହି କୁକୁର ମୂର୍ତ୍ତି ପୂର୍ବେ ଯୋଖରୀଆରେ ଅର୍ଥାତ୍ ରତ୍ନ ସିଂହାସନ କକ୍ଷରେ ଥିଲେ । ପରେ ବୈଷ୍ଣବଧର୍ମର ପ୍ରଭାବରେ ତାହା ସେଠାରୁ ଅପସାରିତ ହୋଇ ଏଠାରେ ରଖାଯାଇଛି । It is said, originally the image of a dog that is now here was in the sanctum sanctorum of the main temple. According to tantric worship, when the Goddess Bhairavee is invocated, food is offered and lateron, a part of it is given to a dog. When Vaishnavism dominated, this image of the dog was removed therefrom and brought over here. (୨) । ଶ୍ରୀମନ୍ଦିରରୁ ପ୍ରକାଶିତ ଓଡ଼ିଆ 'ଶ୍ରୀକ୍ଷେତ୍ର ପରିଚୟ' ବହିରେ ଲେଖାଅଛି— "ପ୍ରତ୍ୟେକ ଦେବତାଙ୍କର ନୈବେଦ୍ୟ ପରେ ଚଣ୍ଡ ନୈବେଦ୍ୟ ଦିଆଯାଏ । ଶାକ୍ତପୀଠରେ ଶ୍ୱାନଭୈରବୀ ଚଣ୍ଡନୈବେଦ୍ୟର ଅଧିକାରିଣୀ । ଯେତେବେଳେ ତାନ୍ତ୍ରିକ ପୂଜା ସମାପ୍ତହୁଏ, ସେତେବେଳେ ଚଣ୍ଡ ନୈବେଦ୍ୟ ଦିଆଯିବା ନିମନ୍ତେ ଏ ମୂର୍ତ୍ତି ସିଂହାସନର ପାର୍ଶ୍ୱ ଦେଶରେ ଥିଲେ । ବୈଷ୍ଣବ ପ୍ରଭାବରେ ତାହା ଉଠାଇଆଣି ଏହିଠାରେ ରଖାଯାଇଅଛି (୩) ।

ଏହି ଦୁଇଟି ଉଦ୍ଧୃତାଂଶରୁ ମନେହୁଏ ଯେ ଏହି କୁକୁରମୂର୍ତ୍ତି ହିଁ ପୂର୍ବେ ସିଂହାସନ ପାର୍ଶ୍ୱରେ ଥିଲେ । ଏହି ମୂର୍ତ୍ତିକୁ କୁଆମଚଣ୍ଡୀ, ଶ୍ୱାନଭୈରବୀ ବା ଉଚ୍ଛିଷ୍ଟ ଭୈରବୀ ମଧ୍ୟ କୁହାଯାଏ । 'ଶ୍ରୀମନ୍ଦିର ସମାଚାର' ପତ୍ରିକାର ଏକ ଲେଖାରୁ ଜଣାଯାଏ ଯେ ଶ୍ରୀପୀଠରେ ସୁଭଦ୍ରା-ଆତ୍ମଶକ୍ତି, ଶ୍ରୀଦେବୀ-ଇଚ୍ଛାଶକ୍ତି, ଭୂଦେବୀ - ଜ୍ଞାନଶକ୍ତି ଓ ଉଚ୍ଛିଷ୍ଟ ଭୈରବୀ (କୁଆମଚଣ୍ଡୀ) - କ୍ରିୟାଶକ୍ତି (୪) । ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ କୁଆମଚଣ୍ଡୀକୁ କୁଆର୍ମଚଣ୍ଡୀ କହନ୍ତି । ସେ ଲେଖିଛନ୍ତି—''ଅନନ୍ତ ବାସୁଦେବ ମନ୍ଦିରର ପଶ୍ଚିମକୁ କୁଆର୍ମଚଣ୍ଡୀଙ୍କ ସ୍ଥାନ । କୁକୁରର ପ୍ରତିମୂର୍ତ୍ତି କାଛରେ ଅଛି (୫) । ପଣ୍ଡିତ ଦାଶଙ୍କ ଲେଖାରୁ ଅନୁମେୟଯେ କୁକୁରର ପ୍ରତିମୂର୍ତ୍ତିକୁ ସେ କୁଆମଚଣ୍ଡୀ ବା କୁଆର୍ମଚଣ୍ଡୀ କହନ୍ତି ।

ସେ ସାହେବ, ଦୁଏତ ଏହି କୁକୁର ପ୍ରତିମୂର୍ତ୍ତି ଦିଓଟି ରତ୍ନବେଦୀ ଉପରେ କିମ୍ବା ପାର୍ଶ୍ୱରେ ବିରାଜମାନ ଥିଲେ । ମରହଟ୍ଟା ଶାସନ ଅମଳରେ ଏକ ଭୈରବମୂର୍ତ୍ତି ରତ୍ନ ବେଦୀ ପାର୍ଶ୍ୱରେ ରଖାଯାଇଥିବା ପ୍ରମାଣମିଳେ । ଏହା ଏକ ତାନ୍ତ୍ରିକ ମୂର୍ତ୍ତି ହୋଇଥିବାରୁ ବୈଷ୍ଣବ ବୈରାଗୀମାନେ ଏ ମୂର୍ତ୍ତି ସେଠାରୁ ଅପସାରଣ ପାଇଁ ଦାବୀ କରିଥିଲେ । ୧୮ଶ ଶତାବ୍ଦିର ଶେଷରେ ରତ୍ନବେଦୀ ମରାମତି ହେବାବେଳେ ଉକ୍ତ ଭୈରବ ମୂର୍ତ୍ତିକୁ ସେଠାରୁ ଅସ୍ଥାୟୀଭାବେ ଘୁଞ୍ଚାଇ ନିଆଯାଇଥିଲା । ବୈରାଗୀମାନେ ଗୁପ୍ତରେ ଏହି ମୂର୍ତ୍ତି ନେଇଯାଇଥିଲେ ଓ ତାହା ଭଙ୍ଗି ଦେଇ ସମୁଦ୍ରରେ ପକାଇ ଦେଇଥିବା ଜଣାଯାଏ । ଦଣ୍ଡୀ ସନ୍ୟାସୀମାନେ ଏ ଘଟଣାରେ କ୍ଷୁବ୍ଧ ହୋଇ ଏକ ନୂତନ ଭୈରବ ମୂର୍ତ୍ତି ଗଢ଼ାଯାଇ ପୂର୍ବପରି ସିଂହାସନରେ ରଖାଯାଉ ବୋଲି ମରହଟ୍ଟା ଶାସକ ରଘୁଜୀ ଭୋନ୍ସଲେଙ୍କୁ ଆବେଦନ କରିଥିଲେ । ରଘୁଜୀ ତାଙ୍କର ନାଏବ ସୁବାଦାରଙ୍କୁ ଆଦେଶ ଦେଇଥିଲେ ଏକ ନୂତନ ଭୈରବ ଗଢ଼ାଯାଉ ଓ ସିଂହାସନରେ ରଖାଯାଉ । ରଘୁଜୀଙ୍କର ଉକ୍ତ ଆଦେଶ ଜାଣିବାପରେ ବୈଷ୍ଣବ ମହନ୍ତ ଓ ସନ୍ଥମାନେ ପ୍ରବଳ ପ୍ରତିବାଦ କରିଥିଲେ । ବାଧ୍ୟହୋଇ ରଘୁଜୀ ତାଙ୍କର ଆଦେଶ ବଦଳାଇଲେ । (Raghuji now changed his opinion. In 1207 A H. 1798-99 A.D.) he issued a 'Hukumnama' two Maratha officers at Cuttack, Raghunath Krishna and Lachhman Janardan, informing, that the Dandi Sadhus 'very improperly' wished to put an image of Bhairava on the throne of Jagannath ) । ପରେ ଭୈରବ ମୂର୍ତ୍ତିକୁ ସିଂହାସନରେ ରଖା ନଯାଇ ମନ୍ଦିର ବେଢ଼ାରେ ରଖା ଯାଇଥିଲା । ୧୮୦୬ ଖ୍ରୀ. ରେ ବ୍ରାହ୍ମଣଙ୍କର ଭରତୀ ଏହି ମୂର୍ତ୍ତିକୁ ପୁନର୍ବାର ରତ୍ନବେଦୀ ଉପରେ ରଖାଯାଉ ବୋଲି ଇଂରେଜ ସରକାରଙ୍କୁ ଆବେଦନ କରିଥିଲେ । କିନ୍ତୁ ତାଙ୍କର ଆବେଦନ ଖାରଜ ହୋଇଯାଇଥିଲା । (In December 1806, Hunter, Collector of Pilgrim tax, gave his opinion regarding installation of a new image of Bhairava on the pedestral of Jagannath. XX He wrote to the Board of Revenue that the installation ot the image would create trouble, as it would be opposed by the vaishnavas. (୬) । ହଣ୍ଟର ସାହେବ ଓଡ଼ିଶା ରେଭେନ୍ୟୁବୋର୍ଡକୁ ଲେଖିଥିବା ତା ୬-୧୨-୧୮୦୬ର ଚିଠି 'ଅନାମ-୧୯' ପତ୍ରିକାରେ ପ୍ରକାଶ

ପାଇଛି (୭) ।

ପଣ୍ଡିତ ସଦାଶିବ ରଥଶର୍ମା ଲେଖିଛନ୍ତି ଯେ "ପ୍ରାଚୀ ସଂସ୍କରଣ ମାଦଳାପାଞ୍ଜିରୁ ଜଣାଯାଏ ସିଂହାସନରେ ଥିବା ଶଙ୍କରାଚାର୍ଯ୍ୟଙ୍କର ଓ ଭୈରବମୂର୍ତ୍ତି ଅପସାରିତ କରାଗଲା ।" ଏହି ବିଷୟ ସମ୍ପୂର୍ଣ୍ଣ ଠିକ ନୁହେଁ । ରତ୍ନସିଂହାସନରେ କୌଣସି ଅନ୍ୟମୂର୍ତ୍ତି ରହିବା ଶାସ୍ତ୍ରସିଦ୍ଧ ନୁହେଁ । ତାହା ଅକ୍ଷୟବଟିଣ୍ଡି ନିକଟରେ ଭଣ୍ଡାର ଲୋକନାଥଙ୍କ ନିକଟରେ ଥିବା ଅଧିକ ସମ୍ଭବ । ସେଠାରେ ଉଚ୍ଛିଷ୍ଟ ଭୈରବଙ୍କ ମୂର୍ତ୍ତିଥିବା ଅନୁମାନ କରାଯାଏ (୮) ।

ଭୈରବ ସମ୍ପର୍କରେ ଭି. ମନି (Vettam Mani) ଲେଖିଛନ୍ତି—"A Parsada of Siva Immediately after his birth this terrible Manster Subdued all the Devas without getting the Permission of Lord Siva. Enraged at it, Siva turned him into a tree by a curse. But Siva was soon pacified and lifted the curse by deciding that those who offered Puja to the Gods would get a full reward of their worship only if they offered Puja to Bhairava also. Bhairava Aecame a tree as soon as he was cursed. Therefore that tree came to be called 'Damanaka'."(୯)

ଶ୍ରୀମନ୍ଦିରରେ ପୂଜାପଣ୍ଡାମାନେ ଭୈରବ ବା ବଟୁଭୈରବଙ୍କୁ ପ୍ରାର୍ଥନା କରି, ଅନୁଜ୍ଞା ନେଇ, ଫୁଲତୁଳସୀ ଅର୍ପଣକରି ପୂଜା କରିବା ପାଇଁ ସିଂହାସନକୁ ଚଢନ୍ତି । 'ବଟୁକ ଭୈରବ କବଚ'ର ଧ୍ୟାନମନ୍ତ୍ରରେ ଅଛି ଯେ ଭୟଙ୍କର ମୁଖ, ନୂପୁର ଭୂଷଣଯୁକ୍ତ, ସର୍ପମେଖଳା, ଅଗ୍ନିବର୍ଣ୍ଣ କେଶ, ଦିଗମ୍ବର, କୁମାରୀଙ୍କ ପ୍ରଭୁ, ବଟୁକ ମହାବଳଯୁକ୍ତ, ଖଟ୍ୱାଙ୍ଗ ଖଡ୍ଗ, ପାଶ, ବରଦ, ସର୍ପ, ନିଜପରି କଳାବର୍ଣ୍ଣ କୁକୁର ଯୁକ୍ତ ରୂପକୁ ଧ୍ୟାନକରି ହୃଷ୍ଟମନରେ ଜପିଲେ ସକଳ କାମନା ପୂରଣ ହୁଏ (୧୦) । "ଆତ୍ମବର୍ଣ୍ଣ ସମୋପେତଂ ସାରମେୟ ସମନ୍ୱିତମ୍" ଶ୍ଳୋକାଂଶ ତାତ୍ପର୍ଯ୍ୟପୂର୍ଣ୍ଣ । ଏହି ଧ୍ୟାନମନ୍ତ୍ର ବିଶ୍ୱସାରତନ୍ତ୍ରରୁ ଗୃହୀତ ।

ତେବେ ଉପରେ ବର୍ଣ୍ଣିତ କୁକୁର ବିଗ୍ରହ କଣ ଭୈରବ ? ଯଦି ସେ ଭୈରବ, ତେବେ ଶ୍ୱାନଭୈରବୀ ବା ଉଚ୍ଛିଷ୍ଟ ଭୈରବୀ କିପରି ହେବେ ? ଏହି କୁକୁର ମୂର୍ତ୍ତି କଣ କୁତ୍ତାମଚଣ୍ଡୀ ; ନା କୁତ୍ତାମଚଣ୍ଡୀଙ୍କର ବାହନ ରୂପରେ ତାଙ୍କର ପ୍ରତୀକ ବିଗ୍ରହ ? କୁକୁରଟି ହୁଏତ ପୁରୁଷ କୁକୁର ଓ ଭୈରବର ପ୍ରତୀକ ।

ଦେବୀ ଏହା ଉପରେ ବସିଥିବାରୁ କୃତ୍ତାମଚଣ୍ଡୀ ବା ଶ୍ମଶାନଭୈରବୀ ନାମରେ ପରିଚିତା । ଏ ସମ୍ପର୍କରେ ଅଧିକ ଗବେଷଣା ଆବଶ୍ୟକ ।

**ସହାୟକ ରଚନାବଳୀ :—**


୧- ଶ୍ରୀଜଗନ୍ନାଥ ମନ୍ଦିର ସ୍ୱତ୍ୱଲିପି
୨- Visit Puri — 3rd Edn., 1983
୩- ଶ୍ରୀକ୍ଷେତ୍ର ପରିଚୟ — ୨ୟ ସଂସ୍କରଣ, ୧୯୮୦
୪- ଶ୍ରୀମନ୍ଦିର ସମାଚାର, ନ: ୨/୩୫ ତା: ୭-୧୦ ୧୯୭୦
୫- ଜଗନ୍ନାଥ ମନ୍ଦିର ଓ ଜଗନ୍ନାଥ ତତ୍ତ୍ୱ—ପଣ୍ଡିତ ସୂର୍ଯ୍ୟନାରାୟଣ ଦାଶ
୬- History of the Jagannath Temple and the 19th century—Prof. P. Mukharjee.
୭- 'ଅନାମ—୧୧' ପତ୍ରିକା, ମେ ୧୯୮୩ ସଂଖ୍ୟା
୮- ଶ୍ରୀଶ୍ରୀ ରାମାନୁଜ ଜୟନ୍ତୀ (ପ୍ରବନ୍ଧ)—ସଦାଶିବ ରଥଶର୍ମା
୯- Puranic Encyclopaedia—V. Mani
୧୦- ନିତ୍ୟକର୍ମ ଦର୍ପଣ (୨ୟ ଭାଗ)—ପଣ୍ଡିତ ବାଇକୋଳି ଜ୍ୟୋତିଷ ବିଶାରଦ ।


ସହକାରୀ ପ୍ରଶାସକ, ଶ୍ରୀମନ୍ଦିର ।

# ଶ୍ରୀଜୀଉଙ୍କ ପୁଷ୍ପ ବିଭୂଷଣ

**ଶ୍ରୀ ପୂର୍ଣ୍ଣଚନ୍ଦ୍ର ଖୁଣ୍ଟିଆ**

ଶ୍ରୀ ଜଗନ୍ନାଥଙ୍କ ବେଶଭୂଷା ଅବର୍ଣ୍ଣନୀୟ । ତାଙ୍କର ପୁଷ୍ପବିଳାସର ସ୍ୱାତନ୍ତ୍ର୍ୟ ମଧ୍ୟ ଉପଲବ୍ଧି କରଯାଇଥାଏ । ବିଭିନ୍ନ ରଙ୍ଗ ଓ ଗନ୍ଧର ଫୁଲର ମାଳ, କର ପଲ୍ଲବ, ହୃଦ ପଲ୍ଲବ, ଚୂଳ, ଅଧର, ଚଉସର ପ୍ରଭୃତିକୁ ଶ୍ରୀଜୀଉଙ୍କୁ ଅଳଙ୍କାର ସ୍ୱରୂପ ପ୍ରତ୍ୟହ ଲାଗି କରଯାଏ । ଦୈନିକ ନୀତି ଛଡ଼ା ଯାନିଯାତ୍ରା ଓ ପର୍ବ ପର୍ବାଣୀ ଏବଂ ମେଳା ମହୋତ୍ସବ ଅବସରରେ ମଧ୍ୟ ସ୍ୱତନ୍ତ୍ର ପୁଷ୍ପ ସଜ୍ଜାର ବ୍ୟବସ୍ଥା ରହିଥାଏ ।

ରତ୍ନସିଂହାସନସ୍ଥ ସପ୍ତ ବିଗ୍ରହ ମନ୍ଦାର, କନିଅର, କଳା ଅପରାଜିତା, ଅରଖ, କୃଷ୍ଣଚୂଡ଼ା, ଦୁଦୁରା, କଇଁ ଏବଂ ବେଲପତ୍ର ପ୍ରଭୃତି ଲାଗିହେବା ନିଷେଧ । କାର୍ତ୍ତିକ ମାସରେ ଶୁଖିଲା ମାଳତୀ ଲାଗି ହେବାର ବିଧାନ ରହିଅଛି । ଶ୍ରୀଦେବୀ ଓ ଭୂଦେବୀ (ଲକ୍ଷ୍ମୀ ଓ ସରସ୍ୱତୀ) ବିଜେ ସମୟରେ ତୁଳସୀ ବୀହିନ ଆଜ୍ଞାମାଳ ଲାଗି ହୁଅନ୍ତି । କିନ୍ତୁ ଅନ୍ୟ ସବୁ ଠାକୁର ବିଜେ ସମୟରେ ତୁଳସୀ ମିଶ୍ରିତ ଆଜ୍ଞାମାଳ ଲାଗି ହୋଇଥାନ୍ତି ।

ଶ୍ରୀମନ୍ଦିରକୁ ଶ୍ରୀଜଗନ୍ନାଥଙ୍କ ଉଦ୍ଦେଶ୍ୟରେ ଆସୁଥିବା ଫୁଲ ମଧ୍ୟରେ ତରଟ, ଟଗର, ପଦ୍ମ, ଚମ୍ପା, କୁନ୍ଦ, ମାଳତୀ, ଯୂଈ, ଯାଈ, ମଲ୍ଲୀ, କୁସୁମ ବା ଗେଣ୍ଡୁ ପ୍ରଧାନ । ଏହାଛଡ଼ା, ତୁଳସୀ ଦୟଣା ଓ ରଙ୍ଗଣୀ ବ୍ୟାପକ ଭାବରେ ବ୍ୟବହାର କରଯାଏ । ଚନ୍ଦନ ଯାତ୍ରାର ୪୨ ଦିନ ଯାଏ ମଲ୍ଲୀ, ଯୂଈଫୁଲ, କାର୍ତ୍ତିକ ମାସରେ ଶୁଖିଲାମାଳତୀ ଫୁଲ, ଶୀତ ଦିନରେ ଗଙ୍ଗଶିଉଳୀ ଏବଂ ବର୍ଷା ଦିନରେ କଦମ୍ବ ଫୁଲରେ ଶ୍ରୀଜଗନ୍ନାଥ ଅପୂର୍ବ ଭାବରେ ବେଶ ହୋଇଥାନ୍ତି । ଏ ସମସ୍ତ ଫୁଲ ଶ୍ରୀମନ୍ଦିରସ୍ଥ ନୀଳାଚଳ ଉପବନ, କୋଇଲି ବୈକୁଣ୍ଠ ଉପବନ ଏବଂ ପୁରୀ ସହର ଓ ସହର ବାହାର ସ୍ଥାନରୁ ସଂଗ୍ରହ କରଯାଏ । ଶ୍ରୀମନ୍ଦିର ପରିଧି ମଧ୍ୟରେ ଥିବା ପୁଷ୍ପ ଉଦ୍ୟାନର ରକ୍ଷଣାବେକ୍ଷଣ ଦାୟିତ୍ୱ ଭରତ

ସେମାନଙ୍କ ମୂଲ୍ୟକୁ ବିଭାଗ ଗ୍ରହଣ କରିଛନ୍ତି । ପ୍ରତ୍ୟହ ଉକ୍ତ ଉଦ୍ୟାନରୁ ଫୁଲ ତୋଳାଯାଇ କ୍ଷେତ୍ର ତରଫରୁ ବିଭିନ୍ନ ବେଶରେ ଲାଗି କରଯାଏ । ଫୁଲମାଳର ସାମଗ୍ରୀ ଅନ୍ୟୁନ ୨୦୦୦ ଜଣ ଭକ୍ତଙ୍କ ଦ୍ୱାରା (ପୁରୁଷ ଓ ସ୍ତ୍ରୀ ଉଭୟ) ଅତିସୁନ୍ଦର ଭାବରେ କେଦଳୀ ପଟୁକାରେ ଗୁନ୍ଥାଯାଇ ଯୋଗାଇ ଦିଆଯାଏ । ଭକ୍ତମାନେ ଶୁଦ୍ଧପୂତ ଭାବରେ ଆଣୁଥିବା ଫୁଲକୁ ଫୁଲଗୁହା ସ୍ଥାନରେ ଗ୍ରହଣ କରଯାଏ । ଏହାଛଡ଼ା ଅନ୍ୟୁନ ୫୦ ଜଣ ମାଳୀ ମନ୍ଦିରର ବିଭିନ୍ନ ସ୍ଥାନରେ ବ୍ୟବସାୟ ସୂତ୍ରରେ ଫୁଲମାଳ ଭକ୍ତମାନଙ୍କୁ ବିକ୍ରୟ କରୁଥିବା ଲକ୍ଷ୍ୟ କରଯାଏ । ଖୁଣ୍ଟିଆ ସେବକ ମାନେ ମାଳ ଫୁଲର ପବିତ୍ରତାକୁ ରକ୍ଷାକରି ନିଷେଧ ଥିବା ଫୁଲ ଯେପରି ଲାଗି ନହୁଏ ତାହା ଧ୍ୟାନ୍‌କରି ବିଭିନ୍ନ ବେଶରେ ଲାଗି ହେବାପାଇଁ ଫୁଲ ତୁଳସୀ ପୁଷ୍ପାଳକଙ୍କୁ ଯୋଗାଇ ଦିଅନ୍ତି ।

ପ୍ରତ୍ୟହ ଦ୍ୱାରଫିଟା ଓ ଦୈନିକ ମଙ୍ଗଳ ଆଳତି, ମୈଲମ, ଅବକାଶ, ଅବକାଶ ପରେ ମୈଲମ, ସାହାଣମେଲା ହେବା ପରେ ଶ୍ରୀଜୀଉଙ୍କର ବେଶଲାଗି ହୁଏ । ଏହି ବେଶରେ ମହାପ୍ରଭୁଙ୍କର ଅନ୍ୟାନ୍ୟ ନୀତି ଯଥା, ରୋଷହୋମ, ସୂର୍ଯ୍ୟପୂଜା, ଦ୍ୱାରପାଳପୂଜା, ଗୋପାଳବଲ୍ଲଭ ଭୋଗ ଏବଂ ସକାଳ ଧୂପ ସମ୍ପନ୍ନ ହୋଇଥାଏ । ଏ ସମୟରେ ଠାକୁରମାନେ ଅଧର, ଗୁଣା, ଝୁମ୍ପା ଓ ଗଭା ଲାଗି ହୁଅନ୍ତି । ଏହି ପ୍ରକାର ସମସ୍ତ ବେଶ ଭୋଗମଣ୍ଡପ, ମଧ୍ୟାହ୍ନ ଧୂପ ଓ ସନ୍ଧ୍ୟାଧୂପ ସମୟରେ ମଧ୍ୟ କରଯାଇଥାଏ । ସନ୍ଧ୍ୟାଧୂପ ପରେ ସାହାଣମେଲା, ମଇଲମ ଓ ଚନ୍ଦନ ଲାଗି ହୁଏ । ଏହାପରେ ଶ୍ରୀଜୀଉଙ୍କର ବଡ଼ସିଂହାର ବେଶ (ବୃହତ୍ ଶୃଙ୍ଗାର) କରଯାଏ । ଏହା ଏକ ଆକର୍ଷଣୀୟ ପୁଷ୍ପ ବେଶ । ଶ୍ରୀବଳଭଦ୍ର, ଶ୍ରୀସୁଭଦ୍ରା, ଶ୍ରୀଜଗନ୍ନାଥ ଓ ଶ୍ରୀସୁଦର୍ଶନ ଶିରଦେଶରେ ଗଭା ପରିଧାନ କରନ୍ତି । ଗଭାକୁ ଫୁଲ ଓ ତୁଳସୀ ମିଶାଇ ସୁନ୍ଦର ଭାବରେ ପ୍ରସ୍ତୁତ କରଯାଇଥାଏ । ଏହା କ୍ଷେତ୍ର ତରଫରୁ ଯୋଗାଇ ଦିଆଯାଏ । ବଳଭଦ୍ର, ସୁଭଦ୍ରା ଓ ଜଗନ୍ନାଥ ଗଭା ସହିତ ଚନ୍ଦ୍ରିକାରେ ମଧ୍ୟ ମଣ୍ଡିତ ହୁଅନ୍ତି । ଚନ୍ଦ୍ରିକାକୁ ଏମାର ମଠ ଯୋଗାଇ ଥାଏ । ଶ୍ରୀ ବଳଭଦ୍ର ଓ ଶ୍ରୀ ଜଗନ୍ନାଥ କପାଳରେ ତିଲକ, ଝୁମ୍ପା ବ୍ୟବହାର କରନ୍ତି । ଏଗୁଡ଼ିକୁ ଜଗନ୍ନାଥ ବଲ୍ଲଭ ମଠ ଯୋଗାଇଥାଏ । କପାଳଦେଶରେ ବଳଭଦ୍ରଙ୍କର ୧୦ଟି, ସୁଭଦ୍ରାଙ୍କର ୮ଟି ଏବଂ ଜଗନ୍ନାଥଙ୍କର ୧୬ଟି ଅଳକା ଲାଗି ହୁଏ । ଏଗୁଡ଼ିକୁ ଦାତାମାନେ ଯୋଗାଇଥାନ୍ତି । ନାକରେ ଗୁଣା ଓ ଝୁମ୍ପା ତିନିଠାକୁରଙ୍କୁ ଲାଗି କରଯାଏ । ଏଗୁଡ଼ିକ କ୍ଷେତ୍ର ତରଫରୁ ଯୋଗାଇ ଦିଆଯାଏ । ସେହିପରି ତିନିଠାକୁର ବେକରେ ଅଧର ଲାଗି ହୁଅନ୍ତି ଯାହାକୁ କ୍ଷେତ୍ର ମଧ୍ୟ

ଯୋଗାଇ ଥାଏ । ଶ୍ରୀବଳଭଦ୍ର ଓ ଶ୍ରୀଜଗନ୍ନାଥ କାନରେ ୨ଟି କରି କୁଣ୍ଡଳ ଏବଂ ସୁଭଦ୍ରା ଶିରର ଦୁଇପଟେ ତଡ଼କି ଲାଗି ହୁଅନ୍ତି । ବଳଭଦ୍ର ଓ ଜଗନ୍ନାଥ ପ୍ରତ୍ୟେକଙ୍କୁ ୨ଟି କରି କରପଲ୍ଲବ ଲାଗି କରାଯାଏ । ତିନି ଠାକୁରଙ୍କ ଉଦରରେ ହୃଦ ପଲ୍ଲବ (ପଦକ) ଶୋଭାପାଏ । ଏ ସମସ୍ତ ଫୁଲ ସାମଗ୍ରୀ ଷ୍ଟେଟ୍ ତରଫରୁ ଯୋଗାଇ ଦିଆଯାଏ । ନାଭି ଦେଶରେ ନଖ ତୁଳସୀ, ଏବଂ ଭୁଜରୁ ପାଦ ଦେଶ ପର୍ଯ୍ୟନ୍ତ ଫୁଲହାର ଓ ଚଉସରରେ ଠାକୁରମାନେ ଶୋଭାପାଆନ୍ତି । ଏ ସମସ୍ତ ଅଳଙ୍କାର ବିଭିନ୍ନ ପୁଷ୍ପ ଓ ତୁଳସୀ ଦ୍ୱାରା ସୁଗ୍ରହରୁ କାରିଗରଙ୍କ ଉଦ୍ୟମରେ ପ୍ରସ୍ତୁତ ହୋଇ ଶ୍ରୀଜୀଉଙ୍କ ଶୋଭାବର୍ଦ୍ଧନ କରିଥାଏ । ଶ୍ରୀଦେବୀ ଓ ଭୂଦେବୀଙ୍କୁ ତୁଳସୀ ବିହୀନ ସୁବାସିତ ଫୁଲରେ ସଜା ଯାଇଥାଏ । ମାଧବ ଙ୍କରେ ତୁଳସୀ ଓ ଶରୀରରେ ଫୁଲମାଳରେ ବେଶ ହୋଇଥାନ୍ତି ।

ଏହିପରି ମନୋରମ ବଡ଼ସିଂହାର ବେଶ ହୋଇ ଠାକୁରଙ୍କ ବଡ଼ସିଂହାର ଧୂପ ଅନୁଷ୍ଠିତ ହୁଏ । ଏହାପରେ ପହୁଡ଼କାର୍ଯ୍ୟ, ଗୀତ ଗୋବିନ୍ଦ ଗାନ, ଖଟଶେଯ ଲାଗି, ପୁଷ୍ପାଞ୍ଜଳି ଇତ୍ୟାଦି କର୍ମମାନ ସମାହିତ ହୁଏ । ବଡ଼ସିଂହାର ଧୂପ ପରେ ୩ ଗୋଟି ରତ୍ନପଲଙ୍କ ତିନି ଠାକୁରଙ୍କ ସମ୍ମୁଖରେ ସିଂହାସନ ତଳେ ରଖାଯାଏ । ଭଣ୍ଡାରିକୁ ଶୟନ ଠାକୁରଙ୍କୁ ଜିମ୍ମା କରାଯାଏ । ପାଳିଆ ଖୁଣ୍ଟିଆ ରୂପା ପିଙ୍ଗଣରେ ସୁବାସିତ ଶୁଦ୍ଧ ପୁଷ୍ପ, ପୁଷ୍ପମାଳ ନେଇ ଭିତରକୁ ଯାଆନ୍ତି ଏବଂ ପଲଙ୍କ ଉପରେ ସୁବାସିତ ପୁଷ୍ପ ଦିଆଯାଏ । ସୁବାସିତ ମାଳା ଓ ତୁଳସୀ ଗଭା ଜଗନ୍ନାଥଙ୍କୁ ଛୁଆଁଇ ପୁଷ୍ପାଳକ ଶୟନ ଠାକୁରଙ୍କୁ ଲାଗି କରନ୍ତି । ଉକ୍ତ ଲାଗି ହୋଇଥିବା ମାଳ ବିମଳାଙ୍କ ମନ୍ଦିରକୁ ଗଲେ ବିମଳାଙ୍କର ପହୁଡ଼ ହୁଏ । ଏ ସମସ୍ତ ନୀତି ପରେ ମୁଦ ଓ ଶୋଧ କରାଯାଇ ପ୍ରଭୁଙ୍କର ପହୁଡ଼ ହୁଏ ।

ପରଦିନ ପ୍ରାତଃ କାଳରୁ ଦ୍ୱାରଫିଟା ଓ ମଙ୍ଗଳ ଆଳତୀ ପରେ ଠାକୁରମାନଙ୍କର ମଇଲମ ହୁଏ । ପୂର୍ବ ଦିନରୁ ବଡ଼ସିଂହାର ବେଶରେ ବ୍ୟବହୃତ ହୋଇଥିବା ସମସ୍ତ ଫୁଲ ସାମଗ୍ରୀ ଦେବୀ ଓ ଭକ୍ତ ସମାଜର ଅତ୍ୟନ୍ତ ଆଦରଣୀୟ ଦୁର୍ଲ୍ଲଭ ପଦାର୍ଥ । ବଡ଼ ଠାକୁରଙ୍କ ଅଧରକୁ କ୍ଷେତ୍ରେଶ୍ୱରୀ ବିମଳାଙ୍କୁ ଲାଗି କରାଯାଏ ଏବଂ ଜଗନ୍ନାଥଙ୍କ ଅଧରରୁ ତୁଳସୀ ବାଦ୍ ଦିଆଯାଇ ମହାଲକ୍ଷ୍ମୀ ଲାଗି ହୁଅନ୍ତି । ସୁଭଦ୍ରାଙ୍କ ଅଧର ଉତ୍ତରାୟଣୀଙ୍କ ନିକଟକୁ ଯାଏ । ଏତଦ୍ ବ୍ୟତୀତ, ବଡ଼ ଠାକୁରଙ୍କ ଚନ୍ଦ୍ରିକା ବଟମଙ୍ଗଳା, ଜଗନ୍ନାଥଙ୍କ ଚନ୍ଦ୍ରିକା ଦକ୍ଷିଣକାଳୀ ଓ ସୁଭଦ୍ରାଙ୍କ ଚନ୍ଦ୍ରିକା ସଙ୍କଟ ଯାତ୍ରା ହରଚଣ୍ଡୀ ଠାକୁରାଣୀଙ୍କ ପାଇଁ ଉଦ୍ଦିଷ୍ଟ । ସମସ୍ତ ଦେବୀ ଓ

ବୀର ହନୁମାନଙ୍କର ଜଗନ୍ନାଥଙ୍କ ଲାଗି ଫୁଲ ପ୍ରତି ଆଶା ରହିଥିବାରୁ ଭକ୍ତମାନେ ଠାକୁରଙ୍କୁ ଲାଗି ହୋଇଥିବା ମାଳଫୁଲ ପୁରୀ ଓ ପୁରୀ ବାହାରର ଦେବଦେବୀଙ୍କ ନିମନ୍ତେ ଶ୍ରୀମନ୍ଦିରରୁ ସଂଗ୍ରହ କରି ନେଇଥାନ୍ତି । ବଡ଼ ସିଂହାର ବେଶ ଫୁଲରୁ ବଡ଼ ଠାକୁର ଓ ଜଗନ୍ନାଥଙ୍କର ଗୋଟିଏ ଗୋଟିଏ ଝୁମ୍ପା ଗଜପତି ମହାରାଜାଙ୍କ ଗୃହଦେବୀ କନକ ଦୁର୍ଗାଙ୍କ ପାଇଁ ପ୍ରତ୍ୟହ ପଠାଯାଇଥାଏ । ମଇଲମ ପରେ ନିର୍ଦ୍ଦିଷ୍ଟ ଦେବୀଙ୍କୁ ଦିଆ ଯାଉଥିବା ମାଳ ଫୁଲକୁ ବାଦ୍ ଦେଇ ଅବଶିଷ୍ଟ ଓଲଗି ମାଳ ଫୁଲକୁ ପ୍ରତି ବାଡ଼ରେ ସେବା କରୁଥିବା ପୁଷ୍ପାଳକ ଅର୍ଦ୍ଧାଂଶରଖି ଅବଶିଷ୍ଟ ଅର୍ଦ୍ଧାଂଶକୁ ପାଳିଆ ଖୁଣ୍ଟିଆଙ୍କୁ ଦେଇଥାନ୍ତି । ଭକ୍ତମାନେ ତୁଳସୀକୁ ପ୍ରସାଦ ଆକାରରେ ଓ ଫୁଲକୁ ଦେବଦେବୀ ଭୂଷଣ ଆକାରରେ ଗ୍ରହଣ କରନ୍ତି ।

ବିଭିନ୍ନ ଯାନିଯାତ୍ରା ସମୟରେ ଠାକୁରଙ୍କ ପୁଷ୍ପ ବିଭୂଷଣ ଭିନ୍ନ ପ୍ରକାରର ହୋଇଥାଏ । ଚନ୍ଦନ ଯାତ୍ରାରେ ଭିତର ଓ ବାହାର ୪୨ ଦିନ ଯ କ ଭୋଗମଣ୍ଡପ ପରେ ଅଲଟ ଲାଗି ହୁଏ ଏବଂ ଏହାପରେ ଚନ୍ଦନଲାଗି ହୋଇ ଠାକୁର ଫୁଲରେ ବେଶ ହୁଅନ୍ତି । ଫୁଲରେ ଚଉସରି, ଅଳକା, ଚୂଳ, ଗଭା, ଗୁଣା, ଝୁମ୍ପା, ଅଧର ପ୍ରସ୍ତୁତ କରଯାଇ ଠାକୁରଙ୍କୁ ଲାଗି କରଯାଏ । ଏହାକୁ ଚନ୍ଦନ ବେଶ କୁହାଯାଏ । ଏ ସମସ୍ତ ଉପକରଣ ଏମାର ମଠ, ଶ୍ରୀରାମଦାସ ମଠ, ରାଘବ ଦାସ ମଠ ଏବଂ ସୁନା ଗୋସାଇଁ ଯୋଗାଇଥାନ୍ତି ।

ଚୂଳଲାଗି ମଧ୍ୟ ବିଭିନ୍ନ ଦିବସରେ କରଯାଇଥାଏ । ଗେଣ୍ଡୁ, ତୁଳସୀ ଓ ଅନ୍ୟାନ୍ୟ ସୁବାସିତ ଶୁଭ୍ରପୁଷ୍ପ କଦଳୀ ପତ୍ର ଦ୍ୱାରା ଆଚ୍ଛାଦିତ ହୋଇ ଦୁବ ସହିତ ଠାକୁରଙ୍କୁ ଲାଗି କରଯାଏ । ନବାଙ୍କ ଦିନ ୨ ଗୋଟି, ମକର ସଂକ୍ରାନ୍ତିରେ ୩ ଗୋଟି, ସ୍ନାନପୂର୍ଣ୍ଣମୀରେ ୯ ଗୋଟି ଏବଂ ଗୁଣ୍ଡିଚା ବାହୁଡ଼ାରେ ବିଭିନ୍ନ ମଠରୁ ଆସୁଥିବା ଚୂଳ ଓ ଟାହିଆ ଲାଗି କରଯାଏ । ନବାଙ୍କ ଦିନ ଜଗନ୍ନାଥ ଲାଗି-ହେଉଥିବା ମାଳ ୨୪ ହାତ, ବଳଭଦ୍ରଙ୍କର ୫୨ ହାତ ଓ ସୁଭଦ୍ରାଙ୍କର ୪୮ ହାତ ଅଟେ । ଏହା ରାଘବଦାସ ମଠ ଯୋଗାଇ ଥାଏ । ପହଣ୍ଡି ସମୟର ଟାହିଆ ଅତ୍ୟନ୍ତ ମନୋରମ । ବାଉଁଶ ପାତିଆରେ କଦଳୀ ପଟୁକାଦ୍ୱାରା ବିଭିନ୍ନ ଫୁଲକୁ ସଜ୍ଜିତ କରି ବନ୍ଧାଯାଇ ଟାହିଆ ପ୍ରସ୍ତୁତ କରଯାଏ । ସ୍ନାନପୂର୍ଣ୍ଣମୀ ଠାରୁ ନୀଳାଦ୍ରି ବିଜେ ପର୍ଯ୍ୟନ୍ତ ଠାକୁରଙ୍କର ୭ ଗୋଟି ପହଣ୍ଡି ହୁଏ ଏବଂ ଏଥିରେ ୨୪ଟି ଟାହିଆ ଓ ଚୂଳ ଲାଗି ହୋଇଥାଏ । ଏଗୁଡିକ ମଧ୍ୟ ମଠମାନଙ୍କ ତରଫରୁ ଯୋଗାଇ ଦିଆଯାଇଥାଏ । ସେହିପରି, ପଦ୍ମବେଶରେ କେବଳ ପଦ୍ମଫୁଲ ଲାଗି ହୁଏ ।

ଆବଶ୍ୟକ ପରିମାଣର ପଦ୍ମଫୁଲ ସୁଲଭ୍ୟ ହେଉ ନଥିବାରୁ ଶୋଲରେ ପ୍ରସ୍ତୁତ ପଦ୍ମଫୁଲରେ ବେଶ କରାଯାଉଥିଲେ ସୁଦ୍ଧା କିଛି ପରିମାଣର ପ୍ରକୃତ ପଦ୍ମଫୁଲ ଠାକୁରଙ୍କୁ ଲାଗି କରାଯାଏ । ଏ ବେଶ ଓ ପଦ୍ମଫୁଲ ଯୋଗାଣ ବଡ଼ଛତା ମଠ ତରଫରୁ ହୁଏ । ଅନବସର ସମୟରେ କେବଳ ଶୁଖୁଲା ପୁଷ୍ପରେ ଠାକୁର ମାନେ ବେଶ ହୁଅନ୍ତି । ଏକାଦଶୀ ଠାରୁ ତୁଳସୀ ଲାଗି କରାଯାଇଥାଏ ।

ଶ୍ରୀଜଗନ୍ନାଥଙ୍କ ବେଶ ବିଶେଷକରି ପୁଷ୍ପ ବିଭୂଷଣ ସମ୍ବନ୍ଧରେ ସଠିକ୍ ବିବରଣୀ ଦେବା ଧୃଷ୍ଟତା ମାତ୍ର । କେଉଁ ସମୟରେ ମହାପ୍ରଭୁ କିଭଳି ଭାବରେ ପୁଷ୍ପରେ ବେଶଭୂଷା ହୁଅନ୍ତି ସେ ସମ୍ବନ୍ଧରେ ଏଠାରେ ସମ୍ୟକ୍ ଆଲୋଚନା ମାତ୍ର କରାଯାଇଅଛି ।

ଦୋଳମଣ୍ଡପ ସାହି
ପୁରୀ ।